

# ଝିଅ ପାଇଁ ଝରକାଟିଏ

ଅପର୍ଣ୍ଣା ମହାନ୍ତି

ଝର୍କା ଖୋଲିଦେଲେ/ ଆକାଶକୁ
ଛୁଇଁପାରୁଥାନ୍ତା/ ଟିପରେ/ ମୁକୁଳାବେଣୀରେ/
ବର୍ଷାକୁ ଗୁଚ୍ଛି/ ଛାଟିଦେଇପାରୁଥାନ୍ତା ପଛକୁ/
ଚପଳ ପବନକୁ/ ଆଖିଠାରି/ ଲୁଚେଇ ରଖନ୍ତା
ପଣତରେ/ ନିଶୁନ୍ ଖରାବେଳେ/ କାଉ, ବଣି
କି ଗୁଣ୍ଡୁଚି ପାଇଁ/ ଆଧାର ମୁଠିଏ/ ଥୋଇ
ଦିଅନ୍ତା/ ଅନ୍ୟମନସ୍କ ଝରକା ଦାଢ଼ରେ ।

# ଝିଅପାଇଁ ଝର୍କାଟିଏ

(ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ)

ଅପର୍ଣ୍ଣା ମହାନ୍ତି



ଓଡ଼ିଶା ବୁକ୍ ଷ୍ଟୋର

# ଝିଅ ପାଇଁ ଝର୍କାଟିଏ




କବିସ୍ରଷ୍ଟା
ଅପର୍ଣ୍ଣା ମହାନ୍ତି

ପ୍ରକାଶକ
ଶ୍ରୀ ବିଜୟ ଶଙ୍କର ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର୍
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ - ଶ୍ରୀପଞ୍ଚମୀ ୨୦୦୫
ଦ୍ୱିତୀୟ ମୁଦ୍ରଣ - ୨୦୧୯

ଛାପାସଂଖ୍ୟା - ୫୦୦

ପ୍ରଚ୍ଛଦ : ବିଜୟ ପ୍ରଧାନ

ଅକ୍ଷରସଜ୍ଜା
ଲେଖନୀ, କଟକ-୧

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍,
ଝୋଲାସାହି, କଟକ-୧

PRICE : **Rs.140/-**

ISBN 81-7400-436-X

**JHIAPAIN JHARKATIE**

*By*

**Aparna Mohanty**

*Published by*
Sri Bijoy Shankar Patra
**ORISSA BOOK STORE**
Binod Behari,
Cuttack-753 002

2nd Edition: **2019**

ଏହି ସଂକଳନରେ ସ୍ଥାନିତ କବିତାସବୁକୁ ବିଭିନ୍ନ ସମୟରେ ପ୍ରକାଶ କରିଥିବା ପତ୍ରପତ୍ରିକାର ମାନନୀୟ ସଂପାଦକମାନଙ୍କୁ, ମୋ'ର ପ୍ରିୟ ପାଠକମାନଙ୍କୁ ଓ ସର୍ବୋପରି ସହୃଦୟ ପ୍ରକାଶକ ବଂଧୁ ଶ୍ରୀଯୁକ୍ତ ବିଜୟ ଶଙ୍କର ପାତ୍ରଙ୍କୁ ଆନ୍ତରିକ କୃତଜ୍ଞତା ନିବେଦନ କରୁଛି ।

ଅପର୍ଣ୍ଣା ମହାନ୍ତି

ତାକୁ କେତେ ବା ବୟସ ! ଏଇ ଦଶ କି ଏଗାର । କୈଶୋର ଛୁଇଁବଛୁଇଁବ ହେଉଛି । ଜିଜ୍ଞାସାରେ ଚକ୍‌ଚକ୍ କରୁଛି ଆଖିର ତାରା... । ଅଙ୍ଗେ ଅଙ୍ଗେ ଢେଉ ତୋଳୁଛି ନୂଆ ଉନ୍ମାଦନା । ଧୂଳିଘରେ କେତେ ସାଙ୍ଗ ହାତଧରାଧରି । ପାଦରେ କୌତୁକ, ଛାତିରେ, ଦୂରକୁ... ଦିଗନ୍ତକୁ ଲଂଘିଯିବାର ଅଜ୍ଞାତ ପୁଲକ ।

ଅଚାନକ ଘୋଟିଆସେ ଅଂଧାର । ଖେଳସାଙ୍ଗ ହାତରୁ ହାତ ଖସିଯାଏ । ଚାରିପଟେ ଉଚା ଉଚା ନିର୍ମମ କାନ୍ଥ । ସେଠି ସୂର୍ଯ୍ୟ, ଚନ୍ଦ୍ର, ପବନ ପ୍ରବେଶ କରିବା ମନା । କଞ୍ଚା ମାଟିହାଣ୍ଡିଟିଏ ଗଢ଼ାହୁଏ ସେଇ ଅଂଧାର ଭିତରେ । ଯୁଗଯୁଗର ହୀନମନ୍ୟତା, ସ୍ୱାର୍ଥପରତା, ସୁବିଧାବାଦିତା ଓ ଅଂଧତ୍ୱର ହାତରେ ଗଢ଼ା ମାଟିହାଣ୍ଡି । ଛୁଇଁଦେଲେ ଭାଙ୍ଗି ଯାଉଥିବା, ମାରା ହୋଇଯାଉଥିବା ମାଟିହାଣ୍ଡି ବଢ଼ିଲା ଝିଅ ।

ଯେଉଁ ବୟସରେ ପୁଅପିଲାଟି ପାଇଁ ସମାଜ ଅନୁଭବର ସକଳ ଦ୍ୱାର ଉନ୍ମୁକ୍ତ କରିଦିଏ, ଠିକ୍ ସେଇ ବୟସରେ ଝିଅଟି ପାଇଁ ସବୁ ଦରଜା ରୁଦ୍ଧ ହୋଇଯାଏ । ସେଇ ରୁଦ୍ଧଦ୍ୱାର ଭିତରେ ଏକ ପୁରୁଷକୈନ୍ଦ୍ରିକ ସମାଜ ବ୍ୟବସ୍ଥାର ଅନୁକୂଳ-ପ୍ରତିମା ଭାବେ ସେ ଗଢ଼ାହୁଏ । ନିଜର କିମ୍ବା ସ୍ତ୍ରୀଜାତିର ସର୍ବବିଧ ବିକାଶ ସମ୍ବନ୍ଧରେ ଗୋଟିଏ ଛୋଟ ଧାରଣା ମଧ୍ୟ ତା' ଭିତରେ ସଂଚାରିତ ହୁଏ ନାହିଁ । 'ଯୁଦ୍ଧ ଓ ଧ୍ୱଂସ' ଯେ ପୁରୁଷର ଅହଂକାର, ଓ ନାରୀର ଅହଂକାର ଯେ 'ପ୍ରେମ ଓ ସୃଷ୍ଟି', ଏ ଦୁଇଟି ଅହଂବୋଧ ଭିତରେ ସେ ଫରକ୍ ଦେଖିପାରେ ନାହିଁ । ଏ ଯାବତ୍ ସଂସାରରେ ଅବତରିଥିବା ମହାପୁରୁଷମାନଙ୍କ ଅସ୍ତିତ୍ୱର ବେଶୀ ଭାଗ ଯେ ନାରୀ, ଏ ସତ୍ୟ ସେ ବୁଝିପାରେ ନାହିଁ । ନିଜକୁ ସେ କ୍ଷୁଦ୍ରମନା ସାଧାରଣ ପୁରୁଷର ସ୍ଥୂଳ ଦୃଷ୍ଟିରେ ଦେଖେ, ସେହି ଭାବନାରେ ଭାବେ, ଓ ସେହି ସ୍ୱାର୍ଥରେ ପରିଚାଳିତ କରେ ।

ପ୍ରଶ୍ନ ଉଠିପାରେ, ଆଜି ତ ଝିଅମାନେ ଏତେ ଆଗୁଆ ହେଲେଣି, ପୁରୁଷର ସମକକ୍ଷ ହେଲେଣି, ସେତେବେଳେ ଆଉ କାହିଁକି ଏ କଥା ?

କିନ୍ତୁ ବିଶ୍ୱବିଦ୍ୟାଳୟର ଡିଗ୍ରୀ ଓ ଚାକିରୀବାକିରୀ କ'ଣ ଏକ ବିକଶିତ ବ୍ୟକ୍ତିତ୍ୱର ନିର୍ଣ୍ଣାୟକ ? ପୁଣି ଭୋଗବାଦୀ ସମାଜରେ ଯେତେବେଳେ ପ୍ରତି ବ୍ୟକ୍ତି ବସ୍ତୁରେ ପରିଣତ ହୋଇଛି, ସେତେବେଳେ ସଭ୍ୟତାର ଆଦିକାଳରୁ ବସ୍ତୁରେ ପରିଗଣିତା ଝିଅ ସେଥିରୁ ସତରେ ମୁକୁଳିଛି କି ? ନାରୀର ସ୍ୱତନ୍ତ୍ର ଅସ୍ମିତାବୋଧକୁ ସାବ୍ୟସ୍ତ କରିବାପାଇଁ ଉଚ୍ଚଶିକ୍ଷିତ, ଉପାର୍ଜନାକ୍ଷମ ଝିଅମାନଙ୍କ ଭିତରେ ପ୍ରବଣତା ଦେଖାଦେଇଛି କି ? ବରଂ 'ପୁରୁଷକୈନ୍ଦ୍ରିକ ସମାଜବ୍ୟବସ୍ଥା ଉପଭୋକ୍ତା ସମାଜର' ବଜାରରେ ନିଜକୁ ପଣ୍ୟଭାବେ ବ୍ୟବହାର କରୁଥିବା କିମ୍ବା ସମାନ୍ତରାଳ ଭାବେ କୂଟକପଟ, କ୍ଷମତାଲୋଭ ଓ ଅର୍ଥଲିପ୍ସାର ପ୍ରତିଯୋଗିତାରେ ମାତିଥିବା ନାରୀଙ୍କୁ ତଥାକଥିତ ସମ୍ମାନ ଓ ସ୍ୱୀକୃତି ସୁଲଭ ହେଉଥିବାବେଳେ ଚେତନାର ମୁକ୍ତି କଥା କହୁଥିବା ନାରୀଙ୍କୁ ମିଳୁଛି ଲାଞ୍ଛନା ଓ ମୃତ୍ୟୁଦଣ୍ଡ !

ଏହାହିଁ ପ୍ରମାଣ କରିଦେଉଛି, ଝିଅର ଘର ତଥାପି ଅଂଧାରରେ ବୁଡ଼ିରହିଛି । ଝିଅର ଅଗଣା ଯେଉଁଦିନ ଫର୍ଚ୍ଚାହେବ, ସେଦିନ ମଣିଷର ସଭ୍ୟତାରେ ସତକୁ ସତ ସୂର୍ଯ୍ୟୋଦୟ ହେବ । ଯୁଦ୍ଧର ଡାକରା ଦେଉଥିବା ଓ ଉପଭୋଗର ଲାଳସାରେ ଜର୍ଜରିତ ହେଉଥିବା ବ୍ୟକ୍ତି ହାତରୁ ପ୍ରେମର ଲଳିତ ଆତ୍ମୀୟ ଶକ୍ତି ହାତକୁ ହୁଏତ କ୍ଷମତା ହସ୍ତାନ୍ତରିତ ହେବ । ନିଜର ଅସ୍ମିତାର ଜରାୟୁରେ ଥରକୁ ଥର ନିଜକୁ ଧାରଣ କରି ଝିଅ ସେଦିନ ପୁନଃ ପୁନଃ ନିଜକୁ ଜଣେ ଶୁଦ୍ଧ ମଣିଷଭାବେ ଜନ୍ମ ଦେବ ।

ନାରୀର ସହଜାତ ନିରୀହ ସୃଜନଲିପ୍ସା ଓ ମଣିଷର ସହଜାତ ଜ୍ଞାନଲିପ୍ସାକୁ ଦୁଇପଟ କବାଟ କରି ଝିଅ ନିଜଘରେ ଝର୍କାଟିଏ ତିଆରିବ, ଯାହାକୁ ବିନାବାଧାରେ ସେ ସବୁ ସୁନ୍ଦର ଓ ମଙ୍ଗଳ ପାଇଁ ଖୋଲିପାରୁଥିବ ତ ସବୁ ଅସୁନ୍ଦର ଓ ଅମଙ୍ଗଳ ପାଇଁ ବୁଜିଦେଇପାରୁଥିବ ।

ମୋ'ର ଦୁଇ ଗେହ୍ଲାଝିଅ ମିଠୁ ଓ ରେନିଙ୍କ ସହ ସଂସାରର ସବୁଝିଅଙ୍କୁ ଏହି ସଙ୍କଳନର କବିତାଗୁଡ଼ିକ ସମେତ ସେ ଦାୟିତ୍ୱ ମୁଁ ଅର୍ପଣ କରୁଛି ।

ଅପର୍ଣ୍ଣା ମହାନ୍ତି

# ଅନୁକ୍ରମ

# ଝିଅପାଇଁ ଝର୍କାଟିଏ

ବେଶୀ କିଛି ନୁହେଁ
ଘରେ ଝରକାଟିଏ ଥିଲେ
ଜୀବନକୁ ମୁଠାରେ
ରଖିପାରିଥାନ୍ତା ଝିଅ ।

ତା' କଅଁଳ
ଗୋରା ହାତମାପର
ଲମ୍ବ-ପ୍ରସ୍ଥର ଝର୍କାଟିଏ ।

ତା' ନିଜ ଇଚ୍ଛାନୁଯାୟୀ
ଖୋଲୁଥିବା, ବନ୍ଦ୍‌ହେଉଥିବା
ଖାଲି ଗୋଟିଏ ଝର୍କା ।

ଝର୍କା ଖୋଲିଦେଲେ
ଆକାଶକୁ ଛୁଇଁପାରୁଥାନ୍ତା
ଟିପରେ ।

ମୁକୁଳା ବେଣୀରେ
ବର୍ଷାକୁ ଗୁନ୍ଥି
ଛାଟିଦେଇ ପାରୁଥାନ୍ତା ପଛକୁ ।

ଚପଳ ପବନକୁ
ଆଖିଠାରି
ଲୁଚେଇ ରଖନ୍ତା ପଣତରେ ।

ନିଶୁନ୍ ଖରାବେଳେ
କାଉ,ବଣି କି ଗୁଣ୍ଡୁଚି ପାଇଁ
ଆଧାର ମୁଠିଏ
ଥୋଇଦିଅନ୍ତା ।
ଅନ୍ୟମନସ୍କ ଝରକା ଦାଢ଼ରେ ।

କେଉଁ
ମୁଗ୍ଧ କିଶୋରର
ଚୋରାଚାହାଣିରେ
ଲାଜେଇଯାଇ
ଲାଲ୍ କଇଁ ପରି
ଫୁଟିଉଠନ୍ତା ଝିଅ

ଗୋଧୂଳିର ଅବିରରେ
ଜହ୍ନର ଜରିଗୁଣ୍ଡ ଗୋଳି
ଝିଅ ଗାଲରେ
ବୋଳିଦିଅନ୍ତା ମୁହଁସଞ୍ଜ ତ
ହେନାର ବାସ୍ନାପିନ୍ଧି
ରାତିରେ ଘୁମେଇପଡ଼ନ୍ତା ଝିଅ ।

ଗଙ୍ଗଶିଉଳି ଡାଳରୁ
ପେନ୍ଥାଏ କାକର-ଓଦା
ଫୁଲତୋଳି
ଝରକାବାଟେ ବଢ଼େଇଦିଅନ୍ତା ଭୋର୍ ।

X X X

ଘରେ ଝର୍କାଟିଏ ଥିଲେ
ଝିଅର ଜୀବନ
ଏତେ ସଅଳ
ସରିଯାଇନଥାନ୍ତା....

ନିଆଁରେ
ହୁଦ୍‌ହୁଦ୍
ଜଳିଗଲା ବେଳେ
ଝର୍କା ଖୋଲି
ସାଇପଡ଼ିଶାଙ୍କୁ
ଡାକିପାରିଥାନ୍ତା ତ !!

*

# କୁନିଝିଅ ପାଇଁ ଗୀତ

ସେଦିନ
ମୋ' କୁନିଝିଅ ଚଢ଼ିଥିଲା
ବୟସର ସବୁଜ ସିଢ଼ିରେ...

ଫଗୁଣର ସବୁଠୁଁ ସୁନ୍ଦର ଫୁଲଟିକୁ
ଚଇତର ସବୁଠାରୁ ମିଠା କୋଳିଟିକୁ
ସେ ତୋଳିବାକୁ
ହାତ ବଢ଼ାଇଲାବେଳେ
ମୁଁ ତଳୁଁ ପାଟିକରି ଉଠିଲି
ନାଇଁ ନାଇଁ ବୋଲି ।

ସେ ମୋ' ଡାକଶୁଣି
ଓହ୍ଲେଇଆସିଲା ମୋ' ପାଖକୁ

ସେଇ ବେଳୁ
ତା' ଆଖିର ଦୁଇକୂଳ
ଅତଡ଼ା ଖାଉଛି
ସର୍ବଗ୍ରାସୀ ଜିଜ୍ଞାସାର
ଅଦିନ ବଢ଼ିରେ ।

କାଇଁକି ଏ କଥା ମନା
କାଇଁକି ସେ କଥା ମନା
ଯେତେକ ଅସହାୟତା
ସହିବା ବ୍ୟତୀତ
କାଇଁକି ଯେ ସବୁକଥା ମନା ମତେ
ମୁଁ ତ
ସମସ୍ତଙ୍କ ପରି ମାଆ !!

ମତେ ସେ
ଭସେଇଦବାକୁ ଚାହୁଁଥିଲା
କରୁଣ ନୀରବ ପ୍ରଶ୍ନର
ତୁହାତୁହା ଶ୍ରାବଣ ଝଡ଼ିରେ ।

ମୁଁ ଭାସିଗଲେ ଚଳିବ କି ?
ମୁଁ ତ ଆଉ
କୁନିଝିଅର ମା' ନୁହେଁ
ମୁଁ ଯେ ଶାଶ୍ୱତ ଚୁଲିମୁଣ୍ଡର
ଚିରନ୍ତନୀ ରାନ୍ଧୁଣିଆଟିଏ

ଏବେ ମତେ
ମୋ' କୁନିଝିଅକୁ
କାଟିକୁଟି, ସୁଆଦିଆ କରି
ପରଷିଦବାକୁ ହବ
ତା' ବାପାଙ୍କୁ
ତା' ସ୍ୱାମୀଙ୍କୁ
ରୁଚୁଥିବା ସୁବର୍ଣ୍ଣ ଥାଳିରେ ।

*

## ଯିବାକୁ ଦିଅ

ଏଥର ଯିବାକୁ ଦିଅ....
ମତେ ଗଢ଼ିବାକୁ ହେବ
ବିଦୂଷୀ କନ୍ୟାମାନଙ୍କ ଗାଁ
ଇଚ୍ଛାମତୀ ଜାୟାଙ୍କର ଦେଶ
ଓ ମନସ୍ୱିନୀ
ଜନନୀଗଣଙ୍କର ପୃଥିବୀ ।

ଦେହ ନୁହେଁ
ଆତ୍ମାକୁ ରମଣ କରି
ଆତ୍ମାକୁ ଜନ୍ମଦେବାର
ବିଧିରେ
ପରିଣୟ-ଯଜ୍ଞର
ପୂର୍ଣ୍ଣାହୁତି ଦେବାକୁ ହେବ ମତେ ।

ବହୂମୂଲ୍ୟ ପୁରୁଷଟିଏ
କ୍ରୟ କରି
ଆତ୍ମାର ପ୍ରୀତି-ସ୍ୱୀକୃତିହୀନ
ଏ ଅଭିଜାତ ଦେହଦାନ
କି କ୍ଲାନ୍ତିକର !

କେବଳ
ବଂଶରକ୍ଷା ଆଳରେ
ହୟବଦନ ବର୍ଣ୍ଣସଙ୍କରମାନଙ୍କୁ
ଦେହରେ ଧାରଣ କଲି
ଥରକୁ ଥର ।

ସେଇଥିପାଇଁ ତ
ମଣିଷପରି ମଣିଷଟିଏ
ଦେଖିବା ଆଜି ସ୍ୱପ୍ନ ।

ମାନବ-ବଂଶନାଶର
ଆତଙ୍କରେ
ସସାଗରା ଧରା
ଆଜି ଥରହର ।

ଆଗାମୀ ଶତାବ୍ଦୀରେ
ମାନସ-ଗର୍ଭବେଦନା
ଭୋଗିବାକୁ
ପ୍ରସ୍ତୁତ ହେବେ
ଯେଉଁ କୋଟିକୋଟି ବାଳିକା,
ତାଙ୍କୁ ହିଁ ନିର୍ମାଣିବାକୁ
ମୋ' ରକ୍ତ, ମାଂସ
ଅସ୍ଥି-ମେଦ-ମେଧା
ବିନିଯୋଗ କରିବି ମୁଁ

ମତେ
ପୁତ୍ରବତୀ ହେବାର
ଅଭିଶାପରୁ ମୁକ୍ତ କରିଦିଅ ।

ସମସ୍ତଙ୍କ ପାଇଁ
ସମଗ୍ର ବସୁଧାକୁ
ଥୋଇସାଇତି
ରଖିପାରିବ ଯିଏ,
ସେଇ ପ୍ରେମମୟ
ମଣିଷର ବଂଶଧାରା
ମତେ ରଚିବାକୁ ଦିଅ...

ଏଥର ଯିବାକୁ ଦିଅ ।

*

## ମେଘପରି

ସ୍ତ୍ରୀଲୋକଟିର
ନିନ୍ଦା ପ୍ରଶଂସା କଥା
କହୁଚ ?

ଭଲ ତରକାରି ରାନ୍ଧିଲେ
ପ୍ରଶଂସା ପାଏ ସ୍ତ୍ରୀଲୋକଟି
ଭଲ କବିତା ଲେଖିଲେ ନିନ୍ଦା ।

ଭଲ ମଥା ବାନ୍ଧି ଶିଖିଲେ
ପ୍ରଶଂସା ପାଏ ତ
ଭଲ କଥା ବାନ୍ଧି ଶିଖିଲେ ନିନ୍ଦା ।

ଭଲ ପିଲା ପାଳିଲେ ଧନ୍ୟ ଧନ୍ୟ
ହେଲେ ଭଲ ଭାବନା ପାଳିଲେ ନିନ୍ଦା

ମରିଶିଖିଲେ ଗୁଣଗାନ ତ
ଜୀବନକୁ
ଭଲପାଇଲେ ନିନ୍ଦା ।

ସୀମା ଭିତରେ ଦେବୀ
ଅସୀମା ହେଲେ
କଥା ସଇଲା ଯା'ର,

କେତେ ଦୁଃଖରେ
ନିନ୍ଦାରେ ନିନ୍ଦାରେ
ନିଜକୁ ସେ ମଣିଷ କରି
ଗଢୁଥିବ କୁହ ତ !

ସବୁ ନାରୀଙ୍କ ଦୁଃଖରେ
କାନ୍ଦିପାରୁଥିବ
ଏସବୁ ପୁରୁଷଙ୍କ ଅସହାୟତାରେ
ସାହା ହେଇ ପାରୁଥିବ ।

ଘର ବାହାରରେ
ଦାଉ ଧକ୍କାରେ ଭାଙ୍ଗିନପଡ଼ି
ଏକୁଟିଆ
ଦାଣ୍ଡମଝିରେ
ଠିଆ ହେଇ ପାରୁଥିବ ।

ତାଚ୍ଛଲ୍ୟର ପାରାବାର ମଝିକୁ
ଜୀବନମୂର୍ଚ୍ଛା ଡେଇଁପଡ଼ି
ପ୍ରେମର ମୁକ୍ତାଟିଏ
ତୋଳିଆଣି ପାରୁଥିବ ।

ଏମିତିକି
କୋଉ ପିଶାଚ ଭିତରେ
ଲୁଚିଥିବା
ପୋଷେ ନିର୍ମଳତାକୁ
ଛାଣିଆଣି
ତାକୁ ସେଥିରେ
କୁନିପୁଅ ପରି
ସୁତୁରା କରି
ଗାଧେଇଦେଇ ପାରୁଥିବ ।

କେତେ କଷ୍ଟରେ
ସେ ନିଜକୁ
ଏମିତି ଜଣେ ମଣିଷ କରି
ଗଢ଼ିବାକୁ ଚେଷ୍ଟା କରୁଥିବ,
ଏକଥା
ଭାବିଚ କେବେ ?

ନିଜର
ଓ ନିଜଲୋକଙ୍କର
ମିଠା ପାଣିଭରା
କୂଅପାଖରୁ ଘୁଞ୍ଚିଯାଇ

ଥରେ
କବିତାର ଲୁଣିଆ
ସମୁଦ୍ରରେ ଝାସଦେଲେ
ସ୍ତ୍ରୀଲୋକଟିର
ଆଉ କେଉଁ ସ୍ୱାର୍ଥ
ପୂରଣ ହୁଏ କି,

ପ୍ରଖରରୁ ପ୍ରଖରତମ
ତୃଷାର ତାପରେ
ଆତ୍ମାକୁ
ଅଦୃଶ୍ୟ ବାଂଫ ପରି
ଶୁଦ୍ଧ କରି କରି
ସମସ୍ତଙ୍କ ପାଇଁ
ମେଘ ତିଆରିକରିବା ଛଡ଼ା.. !!

*

# ଗଙ୍ଗା

ଗଙ୍ଗା ହେଲେ ସିନା
କେହି କହିପାରିବ
ଗଙ୍ଗା କହିଲେ ଥିବି
ଗାଙ୍ଗୀ କହିଲେ ଯିବି
ଏଡ଼େ ଦମ୍ଭରେ !

ବାରମ୍ବାର
ଗଙ୍ଗାର ପବିତ୍ରତାର
ଦ୍ୱାହି ଦେଲାବେଳେ
ନାରୀଟିଏ ଗଙ୍ଗା ହେଉ
ଅମର୍ତ୍ତ୍ୟମୟୀ ହେଉ
କେହି କେବେ
ଚାହାନ୍ତି ନାଇଁ ଏ କଥା
ଏ ମର୍ତ୍ତ୍ୟରେ ।

ଗଙ୍ଗା କ'ଣ
ଆବଦ୍ଧ ହୋଇ ରହିପାରେ
କୂଅରେ ?

କଂସାବାସନରେ କି
ଭାତହାଣ୍ଡିରେ ?

ତ୍ରିଭୁବନର ପିପାସାହାରିଣୀକୁ
କ'ଣ ଚହଲେଇ
ଦିଆଯାଇପାରେ
ପାନପାତ୍ରରେ ?

ଜଗତକୁ
ପ୍ରୀତିଶୁଦ୍ଧ କରିବାର
ଅନୁରକ୍ତିକୁ
ଛାତିରେ ଧରି
ସ୍ୱର୍ଗରୁ ପାତାଳକୁ
ଡେଇଁପଡୁଥିବା
ନାରୀଟି ଜାଣିଥାଏ ଯେ

ତାକୁ ଦିନେ
ବିଷ୍ଣୁଙ୍କର
ନିରାପଦ ନଖକୋଣ
ମୂର୍ଚ୍ଛିବାକୁ ହେବ ।

କେବେ ଶିବଙ୍କର
ଜଟା-ଜାଲ
ଛିଣ୍ଡେଇବାକୁ ହେବ ତ
କେବେ ବିଦାରିବାକୁ ହେବ
ଜହ୍ନୁଙ୍କର ଜାନୁ ।

ଏମିତି ବି
ଦିନ ଆସିବ
ଯେବେ ଥରକୁ ଥର

ନିଜର ସଦ୍ୟଜାତ
ସନ୍ତାନମାନଙ୍କୁ
ଭସେଇଦବାକୁ ହବ
ସଂକଳ୍ପର ସୁଅରେ ।

ସେ ଜାଣେ
ପତିତପାବନୀ ଡାକ
ଶୁଣିବା ପୂର୍ବରୁ

କେବଳ ଦିଶାହୀନ ବହିଯିବାର
ଉଚ୍ଛ୍ୱାସ ନେଇ
ନିଜକୁ ପଡ଼ିଉଠି
ଭରିଦବାକୁ ହବ
ପାହାଡ଼ରେ
ପାତାଳରେ
ମରୁଭୂମି ଅରଣ୍ୟରେ
ଖାଲରେ ଖମାରେ
ନାଳରେ ନର୍ଦ୍ଦମାରେ
ଅବା ସମୁଦ୍ରରେ ।

ଏତେ କଥା କଲାପରେ
ହୁଏତ, ତା' ଦେହ
କାହାପାଇଁ ଆଞ୍ଜୁଳାଏ
ତର୍ପଣର ଜଳ
କି କାହା ଅନ୍ତିମ କ୍ଷଣରେ
ବୁନ୍ଦାଏ ଉଦକ ହେବାର
ଯୋଗ୍ୟତା ଅର୍ଜନ କରିବ ।

ନାରୀଟିଏ ଗଙ୍ଗା ହେଉ
କେହି ଚାହାନ୍ତି ନାଇଁ

ସେ ଶୋଷ ମେଣ୍ଟାଉଥାଏ
ସବୁରି ଦେହର
ମନର
ସଂସାରର

କେହି ତା'ର
ମୋକ୍ଷଦା ରୂପକୁ
ଥାପନା କରନ୍ତି ନାଇଁ
ପିପାସିତ ଆତ୍ମା-ମନ୍ଦିରରେ ।

*

## ସତୀ

ସତୀତ୍ୱ ଯିବା ଭୟରେ
ସ୍ତ୍ରୀଲୋକଟି
କେବେ ବି
ସତ କଥା କହେନି ।

ଗାଁର ଯାତ୍ରାପାର୍ଟିରେ
କେଉଁ ଧନୁର୍ଦ୍ଧରର
ଅଭିନୟ-ବିଭୋରା
ବିନିଦ୍ର ରାତିମାନେ
ତାକୁ ସେଇ
ବୀରବରର (?)
ବଳିଷ୍ଠ ଛାତିରେ
ଲୋଟିଯିବାକୁ ଉସ୍କାନ୍ତି
ଏ କଥା
ସେ ଜମା କହେନି
କା' ଆଗରେ ।

ମେଘ ଉଠିଲାବେଳେ
କୋଉ ଗାଈଆଳ
ଟୋକାଟିର

କଳା ମିଚ୍‌ମିଚ୍
ବାହୁରେ ବାହୁଛନ୍ଦି
ତା' ବଂଶୀର ତାଳେ ତାଳେ
ବେଦମ୍ ନାଚିଲେ
ତାକୁ କେତେ
ଉଶ୍ୱାସ ଲାଗନ୍ତା ସତେ !
ଏ କଥା ବି
ସେ କେବେ କହେନି ।

ସେ କହେନି
ଯେ ବସ୍‌ରେ ତାକୁ
ନିଜ ଜାଗାଟି ଛାଡ଼ିଦେଇ
ଠିଆହୋଇଥିବା ସୁଦର୍ଶନ
ତରୁଣଟିର ସଂଭ୍ରାନ୍ତ
କପାଳରୁ ଲୁଗାକାନିରେ
ଝାଳ ପୋଛିଦେବାକୁ
ତା'ର କେତେ ଇଚ୍ଛା ହୁଏ ।

କେଉଁ ଉଦାସ କବିର
ବହିଥାକ, ବିଛଣା
ସଜାଡ଼ିଦେଲେ
ତାକୁ ଭାରି ଭଲଲାଗନ୍ତା
ବୋଲି ସେ
କେବେ କହେନି ।

ସେ ଆଦୌ କହିପାରେନି
ସ୍ୱାମୀର ଚିରାଚରିତ ସହବାସକୁ
ସହିବାକୁ
ତାକୁ ନିତି ରାତିରେ
କେଉଁ କଳ୍ପିତ ପ୍ରେମିକକୁ

ଦେହ ଉପରକୁ
ଡାକିବାକୁ ପଡ଼େ ।

ପତି ପରମଗୁରୁଙ୍କ ପାଦରେ
ଉତ୍ସର୍ଗ କରିଥିବା
କବିତା ବହିର
ପ୍ରତିଟି କବିତା
ପର-ପୁରୁଷର ସ୍ପର୍ଶରେ
ପୁଲକିତ ବୋଲି
ସେ କାହାକୁ କହେନି ।

ସତୀତ୍ୱ ଯିବା ଭୟରେ
ସ୍ତ୍ରୀଲୋକଟି
ଏଇ ଡହଡହ
ସତ୍ୟ ସବୁକୁ
ଚାପିଦଉଥାଏ
ପାଦରେ ।

ଜଳନ୍ତା
ଅଙ୍ଗାର ଉପରେ
ଠିଆହେଇ
ସତୀତ୍ୱର
ଶୀତଳ-ଛଳନାରେ
ଥଣ୍ଡା କରି ଦଉଥାଏ
ସର୍ବିଙ୍କୁ...

*

## ଅନୁକୃତି

ସୁନ୍ଦର ଅଳତାବୋଳା
ଠାକୁରାଣୀ ହୋଇପାରିଲିନି,
ନାରୀଟିଏ ହୋଇ ରହିଗଲି ।

ଯୋଉଠି ଯିଏ
ସମୁଦ୍ର ପରି ଦିଶିଲେ,
ସେ ଆଡ଼କୁ
ନଈଟିଏ ପରି ଧାଇଁଗଲି ।

ସହସ୍ର ଜନ୍ମର
ପବିତ୍ର ଅଚଳ ସତୀତ୍ୱକୁ ନୁହେଁ,
ବୁନ୍ଦାଏ କାକରର
ଆୟୁଷ ନଥିବା
ଭିଜାମାଟି ଗନ୍ଧର
ଟଳମଳ ମୁହୂର୍ତ୍ତକୁ,
ସମର୍ପି ଦେଲି
ମୋ'ର ଅକୁଣ୍ଠିତ
ଇହକାଳ....ପରକାଳ,

ଆଦ୍ୟା, ଅମୃତା
ଅନନ୍ୟା, ଅସୀମା
ହେବା ଆଶାରେ
ସବୁ ହ୍ରଦ, ପର୍ବତ
ଡେଇଁଗଲି ।

କେହି
ଅଞ୍ଜଳି ପାତୁ କି ନ ପାତୁ
ମୁଁ ଯେ
ଢାଳିହେଲେ
କେତେ କ'ଣ ପୂର୍ଣ୍ଣ କରିପାରେ,
ଏଇ ବିଶ୍ୱାସକୁ
ବଞ୍ଚେଇ ରଖିବା ପାଇଁ
ଅବାରିତ ଆବେଗରେ
ସବୁ ଶୂନ୍ୟପାତ୍ରକୁ
ଛୁଇଁଗଲି.....

ଲିତାଏ ସମ୍ମୋହିତ
ସୁଷୁପ୍ତି ପାଇଁ
ଅୟୁତ ଅତନ୍ଦ୍ର ସାଧନାର
ଅଷ୍ଟସିଦ୍ଧିକୁ ବାଜିରଖିଲା ପରେ
କ୍ଷତବିକ୍ଷତ ଅନୁଭବକୁ
କାନ୍ଧରେ ବୋହି ବୋହି
ଫେରିବାର ସ୍ତବ୍ଧତା
ତମେ ଭୋଗିନଥିବ କେବେ ।

ନିଅ ....

ନିବିଡ଼ ନିଃସ୍ୱତାର

ପିତୁଳିଟିଏ ଗଢ଼ିବାକୁ

ତମ ଆଗରେ

ଅନୁକୃତିଟିଏ ଥୋଇଗଲି ।

*

## କନ୍ୟାଭ୍ରୂଣ

ମରିବା
ତା’ କପାଳ-ଲିଖନ ।

ମାଟି ଛୁଇଁଲାମାତ୍ରେ
ଆରମ୍ଭ ହୁଏ
ତିଳତିଳ ମରିବା

ପ୍ରତ୍ୟାଖ୍ୟାନର
ଅନ୍ଧମୁହାଣୀରେ
ଝୁଣ୍ଟି ପଡୁପଡୁ
ସେ କିନ୍ତୁ
ମୃତ୍ୟୁର ଛୋଟଛୋଟ
ପୁଡ଼ିଆରେ
ସାଇତିରଖେ
ଟିକିଏଟିକିଏ ଜୀବନ ।

ମା’ର ଦୁଃଖୀ ଉଦାସ
ଆଖିକୋଣରେ

ସେ ଲୁଚେଇ
ରଖିଦିଏ
ଟିକିଏ ଆଶ୍ୱାସନା

ବାପାର
କ୍ଳାନ୍ତ ଫଟାଗୋଇଠିରେ
ହାତଆଉଁସା ଟିକିଏ

ଅଭିଶାପର ବୋଝପରି
ବଢ଼ନ୍ତା ବୟସର ପେଡ଼ିରେ
ସେ ସଞ୍ଚୟ କରି ରଖେ

ପ୍ରେମ, କ୍ଷମା
ସହିଷ୍ଣୁତା
ତ୍ୟାଗ ଓ ତପସ୍ୟା

ଚିରା ପଣତରେ
ଗଣ୍ଠିପଡ଼ିଥାଏ
ବିଶ୍ୱାସ ।

ଘରବାହୁଡ଼ା
କ୍ଳାନ୍ତ, ଭୋକିଲା
ଲୋକଟି ଆଗରେ
ସେ ନିଶ୍ଚୟ
ବାଢ଼ିଦେଇ ପାରିବ
ମୁଠାଏ ଉଷୁମ ଭାତ ।

ପୋଷେ ଖୁଦକୁଣ୍ଡାରେ
ସେ ଗଢ଼ିଦେଇପାରିବ
ଗୋଟାଏ ସୁନେଲି ଭବିଷ୍ୟତ ।

ଏବେ ତ
ମାଟି ଛୁଇଁବା ଆଗରୁ
ଆମେ ଲିଭେଇଦେଲେଣି
ତା'ର ଛାୟା....

ଏକୋଇର ବଳା ହୋଇ
କେତେ ଅୟସରେ
ବଢ଼ିଉଠନ୍ତି ସ୍ୱାର୍ଥ, ହିଂସା
ଅହଂକାର ଆମ କୋଳରେ !

କେତେ ନିଶ୍ଚିନ୍ତରେ
କାଟି ଦେଲେଣି ଆମେ
ଧାରେ କଅଁଳ ମୌନ
ମାନବିକତାର ମାୟା !!

*

## ବର୍ଷା

ଜଣେ କାହାକୁ ତ
ନବାକୁ ହବ
ବେଳଅବେଳ ନ ମାନି
ଅବାରିତ ଢାଳିହବାର
ଭୂମିକା !

ସ୍ୱଚ୍ଛତମ ଅବତରଣର
ଆତ୍ମୀୟତାରେ
ଯେତେ ପଙ୍କ କାଦୁଅକୁ
ପବିତ୍ର କରି
କାହାକୁ ତ
ତୁଳେଇବାକୁ ହବ
ଭୂମିକୁ
ନିଃସର୍ତ୍ତ
ସମର୍ପିତ ହୋଇଯିବାର
ଦାୟିତ୍ୱ !

କେହି ତ
ପାଖେଇଆସିବ
ନିଜକୁ ହଜେଇ ଦବାପାଇଁ
'କବି' ର ଅଶ୍ରୁଧାରରେ !

କେହି ଜଣେ ତ
ଛାତିରେ ନିଆଁଜାଳି
ବାଟ କଢ଼େଇନବ
ଅନ୍ଧାରରେ !

ମାଗୁ ନ ମାଗୁଣୁ
କେହି ତ
ସହସ୍ର ଚୁମ୍ବନରେ
ଓଦା କରିଦବ
ଘାସପତ୍ରମାନଙ୍କର ଓଠ !

ପୁଣି
ପ୍ରାଣର ଆବେଗମୟ
ଡାକରାରେ
ସମୁଦ୍ରର ଉଛୁଳି ଉଠିବାର
ଅସାମର୍ଥ୍ୟ ଦେଖି
କେହି ହେଲେ ତ
ନିରଭିମାନ ନୀରବତାରେ
ଲୁଚିଯାଇପାରିବ
ଦିଗ୍‌ବଳୟର ଆରପାଖେ !

ସମସ୍ତେ ମନା କରିଦେଲେ ବୋଲି
ଏତେ ଭାଙ୍ଗିପଡ଼ ନାଇଁ

ଦିଅ
ବର୍ଷାର ପାଉଁଜି ହଳକ
ମୋ'ରି ପାଦରେ
ପିନ୍ଧେଇଦିଅ ଏଥର

*

# ଆତ୍ମରତି

ମୁଁ ଜାଣେ
ଦିନେ ମୁଁ
ଖୁବ୍ ଏକା ହୋଇଯିବି ।

ମୋ' ଠୁଁ
ବୟସ, ଅୟସ ଲୋଡୁଥିବା
ଲୋକମାନେ
କିଏ କୁଆଡ଼େ ଯାଇସାରିଥିବେ ।

ପ୍ରେମ ଲୋଡ଼ିବା ଜନ ତ
କେହି ଜଣେ ହେଲେ
ପଡ଼ିଲେ ନାଇଁ ଆଖିରେ ।

ଦିନୁଦିନ
ଉଚ୍ଛୁଳି ପଡୁଥିବା
ଏଇ ଭରପୂର ଆବେଗର
ଭଣ୍ଡାରକୁ
ନିଜ ଛଡ଼ା
ଆଉ କାହାକୁ ବା ଦେବି ?

କିଛି ଦବା ତ
ଦୂରର କଥା,
ନିଜ ନିଜର
ଗ୍ରହଣ କରିବାର
ଅସାମର୍ଥ୍ୟକୁ
ଲୁଚାଇବାକୁ
ସମସ୍ତେ ପ୍ରେମକୁ
ଅସତ୍ୟ ବୋଲି
ପ୍ରମାଣିତ କଲେ ।

ଯଶ ବିଭବ
ସଂସାରର ଗଣ୍ଡିକୁ
ଟାଣ କରି ଧରିଲେ,

ହୃଦୟର ଡୋରିକୁ
ଦୁର୍ବଳ ସାବ୍ୟସ୍ତ କରିବାକୁ
ଟାଣି ଛିଣ୍ଡେଇଲେ ।

ପ୍ରେମର ପରମାର୍ଥକୁ
ଛୁଇଁବାକୁ
ସୋପାନ ପରେ ସୋପାନ
ଚେତନାର ଶୀର୍ଷତମ
ବିସ୍ତାରକୁ
ଆରୋହଣ କରିବାକୁ ହୁଏ,

ସଂବେଦନାର
ସୂକ୍ଷ୍ମତମ ସ୍ପର୍ଶକୁ
ମୁଠାରେ ସାଇତିବାକୁ ହୁଏ
ଏକଥା ଭୁଲିଯାଇ

କେମିତି ପ୍ରେମରେ ପଡ଼ି
ସେମାନଙ୍କର
ଆଣ୍ଠୁଗଣ୍ଠି ଛିଡ଼ିଲା
ଜୀବନ ନଷ୍ଟ ହୋଇଗଲା
ବାରମ୍ବାର
ଅଭିଯୋଗ କଲେ ।

ଶେଷକୁ
ପ୍ରେମ ସପକ୍ଷରେ
ସାକ୍ଷୀ ଦେବାକୁ ଗୋଟି ଗୋଟି
ଓହ୍ଲେଇ ଆସିଲେ
ଗ୍ରହ ତାରା
ଚନ୍ଦ୍ର ସୂର୍ଯ୍ୟ
ମେଘ ଓ ସମୁଦ୍ର,
ଏପରିକି ନିଜେ
ବଡ଼ ଠାକୁର
ବଡ଼ ଦାଣ୍ଡକୁ.. ।

ତଥାପି...
ଆଖିରେ ସ୍ୱାର୍ଥର
ଅନ୍ଧପୁଟୁଳି ବାନ୍ଧି ,
ସେମାନେ
ଭାବପ୍ରବଣତାକୁ ଶ୍ରୀହୀନ
କବିତାକୁ ପ୍ରାଣହୀନ
ପ୍ରାର୍ଥନାକୁ ଅର୍ଥହୀନ
କହି
ନିଷ୍ପାପ ଭଲପାଇବାକୁ
ଚରମ ଶାସ୍ତି ଦେବାକୁ
କେତେ ତର୍କ କଲେ ।

ମୁଁ ଜାଣେ
ଦିନେ ସକାଳେ
କବାଟ ଖୋଲିଲାକ୍ଷଣି
ମୋ' ହାତଧରି
ମୃତ୍ୟୁ ପାଖକୁ
ନେବା ପାଇଁ
ହସହସ ମୁହଁରେ
ହୁଏତ ଠିଆ ହୋଇଥିବ
କ୍ୟାନ୍‌ସର !

କେହି ପାଖରେ
ଥାଉ କି ନଥାଉ,

ସ୍ୱପ୍ନ ହେଉ
କି ବାସ୍ତବ,

ମତେ ତ ନିତି ରାତିରେ
ପ୍ରେମକୁ ଇ ଲୋଡ଼ିବାକୁ ହେବ
ଜୀବନକୁ ପାଇବାକୁ ହେଲେ

## ଅନୁସରିତ

କୋଉଠି କିଛି
ଭୁଲ୍ ନ ଥାଏ,

ଅଥଚ
ନିଖୁଣ ପ୍ରତ୍ୟାଶାଟିକୁ
ଚୁପ୍‌ଚାପ୍ ଫେରିଆସିବାକୁ ହୁଏ
ପରିପୂର୍ଣ୍ଣ ପ୍ରାପ୍ତିର
ମନ୍ଦିରବେଢ଼ାରୁ ।

ଅବେଳରେ
ଦିଅଁଙ୍କ ପହଡ଼ ପଡ଼ିଯାଏ ।

ସାତଶ ପଞ୍ଚାଶ କୋଶ
ଚାଲିଚାଲି ଆସିଥିବା
ରକ୍ତାକ୍ତ ଗୋଇଠି ।
ଧୂସର ଖାଙ୍କର କେଶ ।
ଅଶ୍ରୁଳ କୋଟରଗତ ଚକ୍ଷୁ
ଖାଲି ଟିକେ ଚାହିଁଦେଇ

ଚାଲିଯିବ ବୋଲି
ଅଟକି ରହିଥିବା ପ୍ରାଣ ।

ଶେଷ ମୁହୂର୍ତ୍ତରେ
କାଳେ ସୁଧାରିହବ ଭାବି
ତରତରରେ ଖୋଜନ୍ତି
ଭାଗ୍ୟ ଓ କର୍ମଫଳର ତ୍ରୁଟି ।

ହତାଶାର ଅନ୍ଧାରରେ
ସେତକ ବି
ଲୁଚିଯାଉଥାଏ ।

ଆହା ....
ଦିଗ ଦିଶିନଥାନ୍ତା ଭଲା !
ଆଖିରେ ପଡ଼ିନଥାନ୍ତା
ଦେଉଳର ନେତ !
ସିଂହଦୁଆରଯାଏଁ
ବାଟକଢ଼େଇ ଆଣିନଥାନ୍ତା ଭାଗ୍ୟ !

ମୋ' ନିଜର ନିରାଶାଠୁଁ
ଦିଅଁଙ୍କ ଅସହାୟତା
ଏତେ ଅଧିକ
ଜାଣିପାରିନଥାନ୍ତି ଜନ୍ମା ।

କେଡ଼େ ସୁରୁଖୁରୁରେ
ପଥ ସରିବା ଆଗରୁ
ଜୀବନ ସରିଥାଆନ୍ତା ସତେ !!

*

## ପ୍ରେମହୀନ

ଏଠି,
ନଇଁନଇଁ
ଆଖି ତଳକୁ କରି
ଚାଲିବାକୁ ହୁଏ
ସବୁବେଳେ....

ସବୁ ଏରୁଣ୍ଡିବନ୍ଧ ଉଚ୍ଚା ତ
ସବୁ ଛାତ ନିଚ୍ଛା ।

ଗଳି ରାସ୍ତା
ଏଡ଼େ ସରୁ ଯେ
ଯେତେ ଜାକିଜୁକି
ବାଟ ଚାଲିଲେ ବି
ଲୁଗାକାନିର
ଅଗ ଟିକେ
କୋଉ କାନକୁହା କାନ୍ଥରେ
ବାଜିଯାଏ
ଓ ଅବିଳମ୍ବେ
ମୋ' ଅନାବୃତ

ଦେହର ଜ୍ୟାମିତି
ସେଠି ଛାପି ହୋଇଯାଏ ।

ଏଥିରେ
ଛାତିଏ ସମୁଦ୍ର
ଆଖିଏ ତାରା
କପାଳେ ଆକାଶ
କବରୀଏ ମେଘ ଧରି
କାହାକୁ ମୁଁ
କେମିତି ଭେଟିବି ?

ଦିଗ୍‌ବିଦିଗ
ଚହଟେଇ ଦଉଥିବା
ପ୍ରୀତିର ସୁଗନ୍ଧି ମାଖି
କେଉଁ ପ୍ରସାରିତ ହୃଦୟର
ଶ୍ୟାମଳ ବନବୀଥିରେ
କେମିତି ଫୁଟିବି ?

ଏଠି ତ
ସବୁ ସଙ୍କୋଚନକୁ
ସ୍ୱୀକୃତି ମିଳେ ସହଜରେ ।

କ୍ଷୁଦ୍ରତା ......
ମଥାଟେକି, ସ୍ପର୍ଦ୍ଧାରେ
ପାଦ କଚାଡ଼ିଲା ବେଳେ
ସଂଧ୍ୟାତାରାଟି ପରି
ଏକାକୀ ଓ
ବିନମ୍ର ଦିଶୁଥାଏ
ଉଚ୍ଚତା

ତାକୁ
ଆଖିଟେକି ଚାହିଁଲେ
ଓଢ଼ଣା ଖସିପଡ଼େ
ମଥାରୁ ... !

ସେତିକିରେ ତ
ଜଗତ ଅସମ୍ଭାଳ

ତୁଚ୍ଛାଦପି ତୁଚ୍ଛ
ନାରୀଟିଏ ହୋଇ
ପୂର୍ଣ୍ଣତମ-ସଙ୍ଗମ-ସ୍ୱପ୍ନମଗ୍ନା
ପ୍ରକୃତି ପରି
ମୁକ୍ତ ଦେହ
ନଦୀ ପରି
ପ୍ରବାହିତ ମନ ନେଇ
ମୁଁ ସତେ
କେମିତି କାହାର
ପ୍ରେମରେ ପଡ଼ିବି ?

*

# କବିତାରେ ଥିବା ନାରୀ

ଚୁଲି-ଚାଳରେ ନଥାଏ
ଶାଢ଼ି-ସୁନାରେ ନ ଥାଏ
ପତି-ପୁତ୍ରରେ ନ ଥାଏ
କବିତାରେ ଥିବା ନାରୀଟି
ସତରେ ବଡ଼ ଦୁଃଖ ପାଏ ।

ନିଧି ଫିଙ୍ଗି
ନିଃସ୍ୱତାର ପଛେପଛେ ଧାଏଁ ।
ମୁକୁତା ଆଡ଼େଇଦେଇ
ଶିଉଳିଫୁଲର ମାଳ
ଗଳାରେ ଝୁଲାଏ ।

କବିତାରେ ଥିବା ନାରୀଟି
କେବେ କୂଳରେ ଲାଗେନା
ଥରକୁ ଥର
ଥରକୁ ଥର
ମଝିନଈରେ ବୁଡ଼ିମରୁଥାଏ ।

ସମଗ୍ର ଆୟୁଷଠାରୁ
ସାର୍ଥକ ମଣୁଥାଏ
ଘଡ଼ିକର ଭାବପ୍ରବଣତା

ନିଜ ଅକାରଣ ଅନ୍ୟମନସ୍କତାର
କାରଣ ଖୋଜିପାଏନା ।

ଜାଣିପାରୁନଥାଏ
କାହିଁକି ସେ ଅହରହ
କାନଡେରେ ...
ଶୁଣିବାକୁ
ପବନରେ ଭାସିଯାଉଥିବା
କାହାର ଆବେଗ-ସଜଳ
ପଦେକଥା ।

ସାରାରାତି ଜଗିବସେ
ଦେଖିବାକୁ
କାକରର ଦର୍ପଣରେ
ଅକଳଙ୍କ ହୃଦୟର ପ୍ରତିବିମ୍ବ ।

ଖରା ପଡୁନପଡୁଣୁ
ଦର୍ପଣ ଉଭାନ୍ ହେଇଯାଏ ।

କବିତାରେ ଥିବା ନାରୀଟିର
କପାଳରେ
କଳଙ୍କର ଟିପା ଆଙ୍କିଯାଏ ।

ଅକ୍ଷରରୁ ଅଣାକ୍ଷରଯାଏ
ଯାତ୍ରା-ବିଜଡ଼ିତ ତା'ର
ପ୍ରତିଟି ସ୍ପନ୍ଦନ ।

ପଦୁଟିଏ ଶବ୍ଦରେ କହିଲେ
ସହସ୍ର ସହସ୍ର ପଦ
ନିଃଶବ୍ଦରେ କହେ ।

ତଥାପି
କିଛି ନ କହିପାରିବା ବ୍ୟଥାରେ
ଘାରି ହେଉଥାଏ ।

କବିତାରେ ଥିବା ନାରୀଟି
ସତରେ ବଡ଼ ଦୁଃଖ ପାଏ ।

*

## ପାଣିଉଆସର ରାଣୀ

ଝରଝର ମେଘ
ବାହାରେ ଭିତରେ
ଝରଝର ଆଖିପାଣି
ଭିତର ବାହାର
ଏକାକାର ମୁଁ ତ
ପାଣିଉଆସର ରାଣୀ ।

ଏ ପାଣିରେ କେତେ
ଗାର, କେତେ ଧାର
କିଏ ତା ପାରିଛି ଜାଣି ?
ଭିତର ବାହାର
ଏକାକାର ମୁଁ ତ
ପାଣିଉଆସର ରାଣୀ ।

କିଏ ଭସେଇଲା
କାଗଜ ନଉକା
କିଏ ବା ବାହିଲା ବୋଇତ
କିଏ ଥଳକୂଳ
ହରେଇ ବୁଡ଼ିଲା

ଖୋଜିବାକୁ ମନମିତ,
କିଏ ଗୋଟେଇଲା
ଶାମୁକା, କିଏ ବା
ନିଜ ଶବ ନେଲା ଛାଣି ।
ଭିତର ବାହାର
ଏକାକାର ମୁଁ ତ
ପାଣିଉଆସର ରାଣୀ ।

ଅଞ୍ଜଳିରେ କଳସୀରେ
କେବେ ବା
ସରିତରେ ସାଗରରେ
ଭରାନୀରେ ମୋର
ଅଭିଷେକ ହୁଏ
କେତେମତେ ବାରେବାରେ
ମୁକୁଟଟି ଥାଳପରି
ଦିଶୁଥାଏ
ରାଣୀ ଚିର ଭିକାରୁଣୀ ।
ଭିତର ବାହାର
ଏକାକାର ମୁଁ ତ
ପାଣିଉଆସର ରାଣୀ ।

ମୁକୁତା-ମଣିରେ
ସବୁରି ଶରଧା
କିଏ ସାଇତିବ ପାଣି ?
ଶୋଷ ସରିଗଲେ
ପାଣିର ଏ ରାଜଧାନୀ
ପାଲଟେ ମଶାଣି

ଜାଣେନା କାହିଁକି
ପାଣିସୁଅ ଏତେ
ମୋ' ଲାଗି ବହେ ଉଜାଣି ?
ଭିତର ବାହାର
ଏକାକାର ମୁଁ ତ
ପାଣିଉଆସର ରାଣୀ

*

## ମୁକ୍ତିବୋଧ

ସମୁଦ୍ରେ ଅଭିଳାଷକୁ
କୌପୀନ ପରି
ସଂକୁଚିତ କରି
ଝଲସିଲୁ
ବେଳାଭୂମି-ପୋଷାକରେ ।

ଆକାଶେ ଆଶାକୁ
ଟୁକୁଡ଼ାଏ ଜରିକାଗଜରେ
ଗୁଡ଼େଇ, ପରିଣତ ହେଲୁ
ତାରକା-ନାୟିକାରେ ।

ଈଶ୍ୱର କି ପ୍ରେମିକର
ମୁଗ୍ଧ ନୟନରେ ନୁହେଁ

ତୁ ସୁନ୍ଦରୀ ଦିଶିଲୁ
ବିଶ୍ୱ-ବଣିକର
ଚୁକ୍ତିବଦ୍ଧ
କୃପା-କଟାକ୍ଷରେ ।

ଆଲୋକର ଫୁଆରାରେ
ମୁକୁଳା ଦେହର
ଇଞ୍ଚ ଇଞ୍ଚ ମାପୁମାପୁ
ତୁ ରହିଗଲୁ
ଯୋଉ ଅଂଧାରକୁ
ସେଇ ଅଂଧାରରେ ।

ତାଜା ମାଂସର
ଖୋଲାମେଲା
ବିପଣୀଯୋଗ୍ୟ
କଣ୍ଢେଇଟିଏ ହୋଇ ।

ସେମାନଙ୍କର
ଅମାନବିକତାର ବ୍ୟୂହରୁ
ମୁକ୍ତି ପାଇଁ
ମୁକ୍ତ ହେଲୁନାଇଁ,

ସେମାନଙ୍କ
ଲାଳସାର ତୃପ୍ତିପାଇଁ
ବିକ୍ରୀହେଲୁ
ମୁକ୍ତ ବଜାରରେ
କେବେ କମ୍ ତ
କେବେ
ଚଢ଼ା ଦର୍‌ରେ ।

*

## ସମ୍ବାଦପତ୍ରରେ ନାରୀ

ପ୍ରତିଦିନ ସକାଳେ
ସମ୍ବାଦପତ୍ରର ବଗିଚାରେ
ନାରୀମାନେ
ଫୁଲହେଇ ଫୁଟନ୍ତି ।

ହତ୍ୟାର
ତାଜା ରକ୍ତର ରଙ୍ଗପରି
ଲାଲ୍,
ଧର୍ଷଣର
ବୀଭତ୍ସ କାମନା ପରି
ନୀଳରଙ୍ଗର
ଅସଂଖ୍ୟ ନାରୀ ।

ତା'ରି ଭିତରେ
ଉଧୁଲଙ୍ଗଳା ଦେହରେ
ହୀରାର ମୁକୁଟ ନାଇ
ଓ କୋଟିଏ ଟଙ୍କାର
ଅଧୁଆ ଅନ୍ତର୍ବାସକୁ

ହାଟରେ ଝୁଲେଇ
ଫୁଟିଫାଟି ପଡ଼ନ୍ତି
କେତେ ସୁନେଲି
ରୁପେଲି ରଙ୍ଗର
ଫୁଲଝରି ।

ମୁଣ୍ଡରେ ହାତଦେଇ
ଚାହିଁରହିଥାଏ
ଜଳକା ମାଳୀ

ଠାକୁରପୂଜା ପାଇଁ
ଫୁଲଟିଏ
ମାଗିବାକୁ ଆସିଥିବା
ଲୋକର ଶୂନ୍ୟ ଆଞ୍ଜୁଳାକୁ

ଝୁଡ଼ିଝୁଡ଼ି
ଫୁଲ ବୋହିନଉଥାନ୍ତି
ଚତୁର ବେପାରୀ

*

## ପାଗଳୀ

ଜୀବନ ପାଇଁ
ଅନାବଶ୍ୟକ ମଣି
ସମସ୍ତେ ଏଣେତେଣେ
ଫିଙ୍ଗିଦଉଥିବା
ଭାବପ୍ରବଣତାକୁ
କାନିରେ ସାଉଁଟିନେଇ
ପାଗଳୀ
ନିଜକୁ ରାଣୀ ଭାବୁଥାଏ ।

ସେମାନେ
ସଜାଡୁଥାନ୍ତି ସଂସାର
ଅହରହ ଲାଗିଥାନ୍ତି
ଟିକିଏ ପବନରେ
ଭୁଶୁଡ଼ିପଡୁଥିବା
ସମ୍ପର୍କର
କାନ୍ଥ ମରାମତିରେ ।

ପାଗଳୀ
ଥାଳ ପତେଇ
ବସିଥାଏ ଦୁଆର ପାଖରେ ।

ତମ ଧନ-ଜନ
ଗୋପଲକ୍ଷ୍ମୀରୁ
ଭାଗ ମାଗୁନାଇଁ,
ମୁଠାଏ ଅନ୍ନ
କି ମୁନ୍ଦାଏ ଜଳ ପରି
ମୁହୂର୍ତ୍ତଟିଏ ଦିଅ ଗୋ ...,

ତା'ର ଆକୁଳ ନୀରବ ଡାକ
କାହାକୁ ଅନ୍ୟମନସ୍କ କରେ
କେବେ କେବେ

ଆବେଗମୟ ମୁହୂର୍ତ୍ତଟିଏ
ସେ ଲୁଚେଇ
ଢାଳିଦିଏ ଥାଳରେ,
କାଙ୍ଗାଳୁଣୀ ଆହ୍ଲାଦରେ
ଦାତାକୁ
ଈଶ୍ୱର ବୋଲି ଭାବେ ।

ମୁହୂର୍ତ୍ତେ ଜୀବନ ତ
ମୁହୂର୍ତ୍ତେ ମୃତ୍ୟୁକୁ
ସର୍ବସ୍ୱ ସମର୍ପିଦେଇ
କିଏ ଆଗେଇଆସି ଧରିବ
ନିଜ ଠିକଣା ପାସୋରିଥିବା
ପାଗଳୀର ହାତ ?

ପାଗଳୀ ବାରଦୁଆରୁ
ନିରାଶାରେ ଫେରେ
ଓଠରେ
ଅପରାଜିତାର ହସ
ଅଞ୍ଜଳିରେ
ଶୂନ୍ୟ ଭିକ୍ଷାପାତ୍ର ।

*

## ଝିଅବିଦା

ଚବିଶ ବର୍ଷକାଳ
ନିଖୁଣ ଗଢ଼ିଥିବା
ଦେବୀମୂର୍ତ୍ତିକୁ
କେଡ଼େ ସମାରୋହରେ
ନିଜଠୁଁ
ଅଲଗା କରୁଥିଲା ଶିଳ୍ପୀ

ଝିଅ
ଶାଶୁଘର ଯିବାପାଇଁ
ସଜ ହେଉଥିଲା ...

ଶାଢ଼ି
ଗହଣା
ସୁଟ୍‌କେଶ୍, ପଲଙ୍କ
ସବୁଥିରେ
ଲେଖାହୋଇଥିଲା
ସ୍ନେହର ମୂଲ୍ୟ ।

ଝିଅ ଘୂରିଘୂରି
ଦେଖୁଥିଲା

ଖୁସି ହେଉଥିଲା,
ତା' ପସନ୍ଦ ଅପସନ୍ଦର
ମିଠାମିଠା ବରାଦରେ
ଘର ଉଚ୍ଛୁଳୁଥିଲା ।

ସେଇଠି କୋଉଠି
ମାଆର ପୁରୁଣା
ଲୁଗାକାନିରେ ବନ୍ଧାହେଇ
ପଡ଼ିଥିଲା,
ପୋକ୍ଷେ ସଜ
ଭାବପ୍ରବଣତାର ଲୁହ ।

ଝିଅ
ଆଡ଼େଇଦେଇ କହିଲା

କ'ଣ ଯେ
ତୋ'ର ବୁଦ୍ଧି !

ଏ ସବୁ ସାଥିରେ
ଏମିତି ଶସ୍ତା
ଜିନିଷଟେ ଦେଖିଲେ
ସେମାନେ ମତେ
କ'ଣ ଭାବିବେ !!

## ବିବାହବାର୍ଷିକୀ

ଗୀତର କୋମଳ
ଗୁଣୁଗୁଣୁ
ଓ ଚୂଡ଼ିର
ଚପଳ ରୁଣୁଝୁଣୁ ପରି
ସ୍ୱପ୍ନ, ଅନୁରାଗର
କେତେ ସଜ-ସତେଜ
ସବୁଜ, ଗୋଲାପି
ନୀଳ ସ୍ୱର୍ଣ୍ଣ ।

ସେଦିନ
ମତେ ଛୁଉଁଛୁଉଁ
ଫେରେଇନେଲେ ହାତ ।

ମୋ' ପାଦରୁ
ଘୁଙ୍ଗୁର ଖୋଲିଦେଇ
ଛାତିର ଗୁଞ୍ଜନକୁ

ସ୍ତବ୍ଧ କରି,
ପାପୁଲିରୁ ହରଗୌରାର
ରଙ୍ଗ ପୋଛି,
ଆଖିରେ
ନିଆଁ-ପାଣି ଭରି
ବାଟଆଗୁଳି ଠିଆହେଲା
ନିଷ୍ଠୁର ଜୀବନ ସଂଘର୍ଷ ।

ଆହା ....
ସେମାନେ ଆଜିଯାଏ
ଠିକ୍ ସେମିତି
ମୋ' ଠୁଁ ଟିକିଏ ଦୂରରେ
ଚାହିଁବସିଛନ୍ତି
ମତେ ଛୁଇଁବାକୁ ।

ହେଲେ
ଆଉ କିଏ ମତେ
ଫେରେଇଦବ

ସେ ଦିନ
ସେ ମନ
ସେ କୌଶଳହୀନ
ଭାବପ୍ରବଣତାର ସମ୍ମୋହନ
ସେ ଲଳିତ ତନୁର
ଉଦ୍ଘାଟନ !

ଗୋଟାଏ ଦାୟବଦ୍ଧତା
ଭସେଇନେଲା
ମୋ' ହାତରୁ
ତା'ର କରାଳ ସ୍ରୁଅରେ
ଅଦୃଷ୍ଟକୁ ସମର୍ପିତ
ନିରୀହ-ସୁଖ-ତର୍ପଣର
କରୁଣ ନୀରବ ପଚିଶବର୍ଷ ।

୨ - ମେ ୨୦୦୦ ମସିହା

## ବିନାଶ୍ରୟେ

କେହି
ହାତ ଧରିବାକୁ
ନ ଥିଲେ ବି ,

କେବେ ଏକୁଟିଆ
ହୋଇଯାଏନା
ନାରୀଟି ।

ଲୋଟଣିପାରା ଭଳି
ଦିନରାତି ଲାଗିଥାଏ
କାମରେ ।

ରନ୍ଧାବଢ଼ା
ଘରସଜଡ଼ା
ଛୁଆର ପାଠପଢ଼ା
ନିଜ ମୂଲ-ମଜୁରିର
ଜଞ୍ଜାଳରେ
କେମିତି ଭାସିଯାଏ

ତା' ଦିନସବୁ
ସୁଅମୁହଁରେ
ପତର ପରି ।

ତା'ରି ଭିତରେ
ମେଘ ଡାକିଲେ
ସେ ଝର୍କା ଖୋଲି
ହସିଦିଏ ଟିକିଏ

ଜହ୍ନ ଉଠିଲେ
ଧାଇଁଆସି ଶଙ୍ଖୋଳିଯାଏ
ଘଡ଼ିଏ,

ଅଗଣାରେ କାଉ ରାବିଲେ
ଦୂରର ମଣିଷପାଇଁ
ଶୁଭ ମନାସି
ଚାଉଳ ମୁଠିଏ ଥୋଇଦିଏ ।

ରୋଗବାଧିକିରେ
ପିଲାକୁ କାନ୍ଧରେ ବୋହି
ରାତିଅଧରେ
ଘରୁ ଗୋଡ଼ କାଢ଼ିଲାବେଳେ
କେହି ପାଖରେ ନ ଥାଏ

ଖାଲି ଛାତିଏ ସାହସ,
ପୃଥ୍ୱୀକୁ ଆଗୁଳି ରଖିପାରିବ

ସେ ପ୍ରଳୟ ଦାଉରୁ
ବେଳ ପଡ଼ିଲେ ।

ଏତେ ଛୋଟିଆ ଦେହଟିରେ
କୋଉଠି ଥାଏ ଏତେ ଦମ୍ଭ ?
ଥାଏ କି
ସୁବିଧା ଦେଖି
ଥରକୁ ଥର
ପର ହୋଇଯାଉଥିବା ସଂସାରକୁ
ନିଜର କରିବାର ନିବିଡ଼
ମମତା ଭିତରେ ... !!

*

# ପ୍ରିୟତମ

ବିଷାଦର
ମଧୁର
ସଙ୍ଗୀତ ପରି
ସେ ...

ସ୍ୱାଭିମାନ ପରି
ଏକାକୀ ସବୁବେଳେ

ଉଦାସୀନ
ଆତ୍ମୀୟତାରେ
କୋମଳ, ଆର୍ଦ୍ର
ହାତପାପୁଲି ତାଙ୍କର ।

ବିଦ୍ରୋହ ପରି
ଦେଦୀପ୍ୟମାନ
ଅନ୍ଧାରର
ଆଭାସ ମାତ୍ରେ ଇ ।

ଲକ୍ଷେ ଲୋକଗହଳିରେ
ବାରିହୋଇପଡ଼ନ୍ତି

ବୋଲିହେଇଥିବା
ନିର୍ଜନତାର
ସୁବାସରୁ ....

କେବେକେବେ ତାଙ୍କ
ମୁଦ୍ରିତ ନେତ୍ର-ପଲ୍ଲବରୁ ଢଳିଆସେ
ବୁନ୍ଦେ ଲୁହ ।

ଓଠ
ଥରିଉଠେ
ଅଳ୍ପ ।

ଖୁବ୍ ଧୀର
ଦୀର୍ଘଶ୍ୱାସଟିଏ
ଆଉଜିଯାଏ
ମୋ' ଛାତିରେ ।

ମୁଁ ବୁଝିପାରେ
ପ୍ରତିଷ୍ଠା ହେଉଚି
ପ୍ରୀତିର ଗର୍ଭଗୃହ
ମୋ' ପ୍ରେମିକାପଣର ତୁଚ୍ଛତା
ପୂଜା ପାଉଚି
ବେଦନାର
ଈଶ୍ୱରୀ ରୂପରେ ।

*

## ସ୍ପର୍ଶ

ତୁ ମତେ
ଛୁଇଁଲାକ୍ଷଣି

ନିଆଁ ପାଣି
ପାପ ପୁଣ୍ୟ
ସରଗ ନରକ
ସମାଧି ସମ୍ଭୋଗ

ମୋ' ତନୁରେ
ସବୁ ଏକାକାର ।

ମୋ' ଭିତରେ
ତୁ
ଆଉ ତୋ' ଭିତରେ
ମୁଁ

ଆକାରକୁ
ସୁଖସିନ୍ଧୁରେ
ବିସର୍ଜନ କରୁକରୁ

ଆମ ଆରାଧନାରେ
ମଗ୍ନ ଥାଏ
ବିନ୍ଦୁଏ ନିରାକାର ।

ପ୍ରଶ୍ନୋତ୍ତରହୀନ
ବିନିମୟତାରେ
ଆମେ ଦୁହେଁ
ନିବୁଜ ଥିଲାବେଳେ

ତୋ' ନିର୍ବିକଳ୍ପ ଦେହ
ପଚାରେ
କେମିତି ଲାଗୁଛି ?

ମୋ' ସମର୍ପିତ ସର୍ବାଙ୍ଗ
କହେ
ଆଃ
ତୁ ଖାଲି
ଥରୁଟେ ଛୁଇଁଦେଲେ

ସୃଜନ-ପ୍ରଳୟ
ମିଳନ-ବିରହ
ଦେହ-ବିଦେହ
ଓ ଈଶ୍ୱରଙ୍କ ଉପରେ
ମୁଁ ସିଦ୍ଧ କରିପାରେ
ମହା-ଅଧିକାର

*

## ଅର୍ପଣ

ଆତ୍ମାର ଅମୃତରେ
କାୟମନୋବାକ୍ୟର
ମାଟିକୁ ଚକଟି
ମୁଁ ଗଢ଼ିଲି
ପ୍ରେମର ବିଗ୍ରହ ।

ସେମାନେ କହିଲେ
ତାକୁ ଦେହ ।

ମୁଁ କାଳ କାଳ
ଅପେକ୍ଷା କରିଚି
କେହି ତ କହିବ
ଏ ଦେହ ?
ଏ ତ ଦେହ ନୁହେଁ

ଅନୁରାଗର
ଏ ସ୍ଫଟିକ ପ୍ରତିମା !

ସୁନ୍ଦର,ଅନଶ୍ୱର
ସମାହିତ ଭାବସମ୍ଭୋଗର

ଏ ନିସର୍ଗ
ଦିବ୍ୟ ସମାରୋହ !

ଦେହକୁ ଆତ୍ମା
ଆତ୍ମାକୁ ଦେହ ବୋଲି
ଅଭେଦ ଚିହ୍ନିବା
ଚିହ୍ନେଇବା ପ୍ରାର୍ଥନା
ଗୁଞ୍ଜରିତ ହୁଏ
କେଉଁ ହୃଦ-ମନ୍ଦିରରେ ?

ମୁଁ ସେଠି
କାନଡେରେ
ନୈବେଦ୍ୟ ଦେବାକୁ

ମୋ' କବିତାରେ
ପ୍ରସ୍ଫୁଟିତ ବର୍ଣ୍ଣମାଳା ସହିତ
ଦେହକୁ ଜାବୁଡ଼ି ଧରିଥିବା
ଆସକ୍ତ ଆତ୍ମା
ଆତ୍ମାକୁ ପରିଧାନ କରିଥିବା
ତପସ୍ୱିନୀ ଦେହ ।

*

## ନଗ୍ନତା

ଯେତେବେଳେ
ପରମ ସ୍ରଷ୍ଟା ପାଇଁ
ହୃଦୟରେ
ସମର୍ପଣ ଜାଗେ

ଦୃଷ୍ଟିରେ
ଅବତରଣ କରେ
ସ୍ୱଚ୍ଛତା...

ସେତେବେଳେ
କେଡ଼େ ଶୋଭାର ପସରା
ମେଲି ନ ଦିଏ ସତେ
ପରିପୂର୍ଣ୍ଣ ମଣିଷର
ନଗ୍ନତା ... !

ସ୍ନାୟୁରେସ୍ନାୟୁରେ
ସୃଜନର
ସର୍ତ୍ତହୀନ ଅନୁରାଗ
ସ୍ପନ୍ଦିତ ହୁଏ ଘନଘନ

ହଳଦୀବସନ୍ତକୁ ଜାମା
ପଦ୍ମଫୁଲକୁ ଓଢ଼ଣୀ
ଓ ଜହ୍ନରାତିକୁ
ଚାଦର ଢାଙ୍କିଦବାର
ନିର୍ବୋଧତାରୁ
ମୁକୁଳିଆସେ
ଉଦାର ପ୍ରସାରିତ ମନ ।

ଦିଗମ୍ବର ଜୀନାସନ
କୋଣାର୍କ-ମିଥୁନ
ସମାଧିର ତଲ୍ଲୀନତାକୁ
ଉତ୍ତୀର୍ଣ୍ଣ ହୁଅନ୍ତି ।

ଛଳନାଶୂନ୍ୟ ଯୌବନର
ସୁବାସରେ
ମହକିଉଠେ
ଶାଳଭଞ୍ଜିକାର ସ୍ତନ ।

ଅନନ୍ତ ପ୍ରକୃତିର
ଉପାସନା ପୀଠର
ଗର୍ଭଗୃହ
ଏଇ ଦେହ

ତା'ର ଉନ୍ମୋଚନ
ସତ୍ୟର ଅବାକ୍ ଅବଲୋକନ
ସୁନ୍ଦରର ମୁଗ୍ଧ ଆରାଧନା
ଶିବର ଆବିଷ୍ଟ ଆବାହନ ।

ସୀମାର
ଗୁପ୍ତ ଗଙ୍ଗୋତ୍ରୀରେ
ଅସୀମର ବିନୀତ
ପୂନୀତ ତୀର୍ଥସ୍ନାନ ।

କବି ଶିଳ୍ପୀ
ପ୍ରେମିକ, ଉପାସକର
ଅନ୍ତିମ ଯାଚ୍ଞା
ଯୋଗେଶ୍ୱରୀ ନଗ୍ନତାକୁ

କବଳିତ
କରିପାରେ କି
କେଉଁ ଲାଭଖୋର
ବଣିକର
ସାମୟିକ ଚୁକ୍ତିବଦ୍ଧତା !

ବିଜ୍ଞାପନରେ
ନଗ୍ନତା ବୋଲି
ଆଜିସବୁ ଯାହା
ସ୍ନାୟୁର ବସୁନ୍ଧରାକୁ
ବିଧ୍ୱସ୍ତ
ବିକ୍ଷିପ୍ତ କରିଦିଏ

ତା' କେବଳ
ପ୍ରବଞ୍ଚକମାନଙ୍କର
ଛଦ୍ମତା ...

*

## ପ୍ରେମିକା

ମୋ' ନାମ କହିଲାବେଳେ
ପ୍ରଳୟକୁ ପୁନଃ ପୁନଃ
ଜିହ୍ୱାଗ୍ରରେ ରଖ ।

କେହି ବାଟୋଇ ପଚାରିଲେ
ତର୍ଜନୀକୁ ନରକ-ପଥ
ଓ ଭ୍ରୂକୁଟିକୁ ପାପର ସଙ୍କେତ
ପରି କରି
ଚିହ୍ନେଇ ଦିଅ ମୋ' ଘର ।

ମୋ' ଛାଇ ପଡ଼ିଲେ
ଅପ୍ରକାଶ୍ୟ ଲାଳସା
ଓ ପ୍ରକାଶ୍ୟ ଘୃଣାରେ
ନିଜର ପବିତ୍ରତାକୁ
ବିଜ୍ଞପିତ କର ।

ମୋ'ର ଆଉ
ପ୍ରତିବାଦ ନାଇଁ

ଆଜି ସକାଳୁ
ମୋ' ଆତ୍ମାରୁ ଘୁଂଚିଯାଇଚି
ଯେତେ ବ୍ୟଥା
ମନରୁ ଯେତେ ଡର ।

କାଲି ନିଶାର୍ଦ୍ଧରେ
ଜଣେ ଦେବଦୂତ ଆସି
ମତେ କ'ଣ
କହିଗଲେ, ଜାଣ ?
କହିଲେ,
ତୋତେ
ତୋତେ ଯେତେଯେତେ
ନିନ୍ଦା ଦେଉଥିବେ ସେମାନେ
ସେମାନଙ୍କ ଚେତନାର ଚଉପାଶେ
ସେତେସେତେ ଘନ ହୋଇ
ଘୋଟିଯାଉଥିବ
କୁତ୍ସିତ, ପୁତିଗନ୍ଧମୟ
କ୍ରମଶଃ ରସାତଳଗାମୀ
ଏକ ଅହଂର ବଳୟ ।

ଆଉ ତୁ
ତଳକୁ
ତଳକୁ ମୁହଁପୋତି
ଧୀରେଧୀରେ
ସ୍ୱଚ୍ଛରୁ ସ୍ୱଚ୍ଛତର ହେବୁ,
ମିଳନଅନୁରାଗୀ ତୋ' ପ୍ରାଣ

ଚହଟିଉଠିବ
ମହମହ ।

ଦେଖିବୁ
ଦିନେ ସ୍ୱଚ୍ଛତମ ଥାନଟିଏ
ଖୋଜିଖୋଜି
ଈଶ୍ୱର ତୋ' ଦୁଆରେ
ଶେଷକୁ ଆସି ପହଞ୍ଚିବେ

ନିଜ ହାତରେ
ତୋ' ଘରର
ପ୍ରବେଶ ପଥରେ
ଲେଖିବେ 'ପ୍ରେମ'
ଓ ପ୍ରସ୍ଥାନରେ ଲେଖିଦେବେ
ମଧୁର ବିରହ ।

# ପ୍ରେମିକାର ଚିଠି

ମାନନୀୟା
ମୋ' ପ୍ରେମିକର ପତ୍ନୀ
ତମକୁ
ମୋ' କୋଟି ନମସ୍କାର ।

ଆଗୋ
ଅଧିକାର-ପ୍ରମତ୍ତ-ମହାରାଣୀ
ଜାଣିଚ କି
ମୋ' ପରି କଳଙ୍କିନୀ
ନିଃସ୍ୱ ନାରୀର ବି
ମନର ମଣିଷ ଉପରେ
ଅଛି କିଛି
ସ୍ୱତନ୍ତ୍ର ଅଧିକାର ।

ଆଗୋ ଗୃହଲକ୍ଷ୍ମୀ,
ତମ ଧନଧାନ୍ୟର ଭେଳିକି
ଦେଖିବା ଆଗରୁ
ମୁଁ ତାଙ୍କ

ଆବେଗମୟ ଆଖିରେ
ଆଙ୍କିଚି
ମୋ' ଆତ୍ମାର
ମୁଗ୍ଧ ସମର୍ପଣ

ହଜାରେ ସର୍ତ୍ତର
ଅଗ୍ନିକୁ ସାକ୍ଷୀ ରଖି
ତମେ ତାଙ୍କୁ
ଛୁଇଁବା ଆଗରୁ
ମୁଁ ତାଙ୍କ ଓଠରେ ଦେଇଚି
ଲକ୍ଷ ଲକ୍ଷ ନିଃସର୍ତ୍ତ ଚୁମ୍ବନ ।

ଉତ୍ତରାଧିକାରୀ
ଲାଭ-ଋତୁର
ହିସାବ କରିକରି
ତମେ ନିଜ ଦେହକୁ
ବିନିଯୋଗ କରିବା ପୂର୍ବରୁ
ସମାହିତ ସମ୍ଭୋଗର
ଦେବଦୁର୍ଲଭ ଉନ୍ମାଦନାରେ
ମୁଁ ତାଙ୍କ ଦେହକୁ ନେଇ
କୋଣାର୍କଠୁଁ
ପ୍ରାଣମୟ
ମିଥୁନ ଗଢ଼ିଚି
ବାରମ୍ବାର ।

ତାଙ୍କ ଔରସରୁ
ପ୍ରୀତିକୁ ହିଁ ଗର୍ଭରେ

ଧାରଣ କରିଚି,
ପ୍ରଣୟର କ୍ଷଣଜନ୍ମା ଇନ୍ଦ୍ରଧନୁ
ମୋ'ରି ଜରାୟୁରୁ
ଗ୍ରହଣ କରିଚି
ନବଜନ୍ମ ।

ଜାଣ
ଆମକୁ ଅଲଗା କରିବାକୁ
ତମର ଏ ଯେତେଯେତେ
ସମାଜସିଦ୍ଧ ଯୁଦ୍ଧ ଆୟୋଜନ

ଆମକୁ
ଚୋରା-ପ୍ରୀତିର ମାଧୁରୀରେ
ଆଉରି ଜୁଡୁବୁଡୁ
କରିଦେଇଚି

ପରସ୍ପରକୁ
ପାଇବା ଛୁଇଁବାର ନିଶା
ଆଉରି ହେଇଚି
ପ୍ରବଳ, ପ୍ରାଣପଣ ।

ତମେ ଆସିଲ ବୋଲି ତ
ମୁଁ ଏମିତି
ଲାଖିଯାଇପାରିଛି
ଅଦେଖା ମେଘଖଣ୍ଡେ ହୋଇ
ମୋ' ସୂର୍ଯ୍ୟର
ଅଧାଲୁଚା
ଉଦାସ ଛାତିରେ

ତମ ଉପସ୍ଥିତିର
ଜ୍ୱାଳାରେ
ଛଟପଟ ହେଇ ତ
ମତେ ବର୍ଷିଯିବାକୁ
ଡାକୁଛି ସେ
ପ୍ରତିଦିନ
ନିଘନ ରାତିରେ ।

କେତେ କୃତଜ୍ଞ ମୁଁ
ତମ ପାଖରେ
ଅୟି ପ୍ରିୟତମର ପତ୍ନୀ

ସତରେ
କେବେ ବି ଶୁଝିପାରିବି ନାଇଁ
ଏ ଜନ୍ମରେ
ତମର ଏ ଋଣ

ଇତି
ତମ ପତିଙ୍କ ହୃଦୟେଶ୍ୱରୀ
(ତମେ ମାନ ବା ନ ମାନ)

*

# ପରିଚୟ

ହୃଦୟକୁ
ଆଖିବୁଜି
ସର୍ବସ୍ୱ ସମର୍ପି ଦେଉଥିବା
ନାରୀଟି ଉପରେ
ଭରସା କ'ଣ !

ସେ
ରୋଷେଇଶାଳରେ
ବିତେଇପାରେନା ଜୀବନ

ଥୟଧରି
ରହିପାରେନା ଶେଯରେ

ପିଲାଛୁଆଙ୍କ
ଆର୍ଦ୍ଧୋଳିରୁ
ଖସିଆସି
କୋଉ ନଈକୂଳେ
କି ନୀପମୂଳେ
ପ୍ରତୀକ୍ଷା କରେ
କଳଙ୍କକୁ ।

ବଂଶୀର
ନିଃଶବ୍ଦ ମୂର୍ଚ୍ଛନା
ସାଜିବାକୁ
ଜନନୀ-ଭଗିନୀ-ଜାୟାର
ମହାର୍ଘ ମୁକୁଟକୁ
କାଢ଼ି ଫିଙ୍ଗିଦେଉଥାଏ
ଥରକୁ ଥର ।

କବିତାର
ଅଶ୍ରୁତ ବର୍ଣ୍ଣମାଳାର ସ୍ରୋତରେ
ଅସହାୟ ଭାସିଯାଉଥିବା
ନାରୀର

ରକ୍ତମାଂସ ଖୋଜିବସିଲେ
ନିଜର ଅପାରଗତାରେ
ନିଜେଇ ହତାଶ ହେବ
ଶେଷକୁ ।

ପାର ଯଦି,
ତା'ର ଚଲାବାଦଲ ପରି
ଦେହକୁ
କ୍ଷଣେ ଜାକିଧର ଛାତିରେ ।

ତମେ ଯେ
ଆକାଶଠାରୁ ବିଶାଳ
ସେ ଠିକ୍
ଚିହ୍ନେଇଦବ ତମକୁ ।

*

## ଅଲୋଡ଼ା କଳଙ୍କ

ବୁନ୍ଦାଏ ସୁଖ
କୁଙ୍କୁମ
କି ଚନ୍ଦନ ପରି

କେବଳ କପାଳ ନୁହେଁ
ଆତ୍ମାକୁ ସୁନ୍ଦର
କରିଦଉଥିବା
ସୁଖ ବୁନ୍ଦାଏ ।

କାଳର ପାପୁଲିରୁ
ତାକୁ ଟିପରେ
ପୋଛିଆଣିବା
କିଛି କମ୍ କଥା !

ଗୋଟାକଯାକ ଜୀବନ
ଘୋରିବାକୁ ହବ ।
ସେଥିରେ
ଲହୁ ଲୁହର ଓଦାପଣ
ଓ ସମର୍ପଣର ମହକ
ଭରିବାକୁ ହବ ।

ତଥାପି କିଏ ଜାଣେ
ସେଇ ବୁନ୍ଦାଏ ସୁଖ ପାଇଁ
ଲକ୍ଷେଥର ଜନ୍ମନେଇ
ଲକ୍ଷେଥର ମରିବାକୁ ହବ ।

ଶେଷରେ
ଅନନ୍ତ ତପସ୍ୟା ପରେ
ତାକୁ ପିନ୍ଧେଇବା ପାଇଁ
ଶୂନ୍ୟପରି
ନିର୍ମଳ ଲଲାଟଟିଏ
ଖୋଜିବାକୁ ହବ ।

ଭାଗ୍ୟ ଓ ଅଭିଳାଷର
ଅବିରାମ ସଂଗ୍ରାମରେ
କ୍ଷତବିକ୍ଷତ ହୋଇନଥିବା
ସେମିତି ଲଲାଟ କାହିଁ,

ଘେନିବାକୁ
ଏ ପରମ
ସୁଖର ତିଳକ !

ଅଙ୍କାବଙ୍କା ରେଖା
ଓ ସହସ୍ର ଭୃକୁଞ୍ଚନରେ ଭରା
ଅସ୍ୱଚ୍ଛ ମଥାରେ
ଅମୃତ-ବିନ୍ଦୁ ବି
କେଡ଼େ ମଳିନ ଦିଶେ,

ସତେ ଅବା
ଅଲୋଡ଼ା କଳଙ୍କ !

※

## ଆକାଙ୍କ୍ଷିତ

କେମିତି
ସେ ଲୋକ
ହୋଇଥିବେ

ଯିଏ
ପ୍ରେମିକାର
ହାତଧରି
ମଥାଟେକି
ଠିଆ ହୋଇଯିବେ
ସର୍ବସମକ୍ଷରେ

ଥିବ କି
ପ୍ରେମ ସପକ୍ଷରେ
ଜୀବନର
ଲାଭକ୍ଷତିକୁ
ଅତିକ୍ରମ କରିବାର
ସାହସ ଟିକିଏ
ତାଙ୍କ ଛାତିରେ

ଅସହାୟ
ଲୁହ-ଲହୁରେ
ଜୁଡୁବୁଡୁ
ଏଇ ପୃଥ୍ୱୀକୁ
ଅନବରତ
ଆଲିଙ୍ଗନ କରିବାରେ
ସାତ ସାଗର
ଆବେଗ ଥିବ କି
ତାଙ୍କ ଆଖିରେ

ତଥାକଥିତ ସଂସାରରେ
ଦୁଃଖ ଥାଉ କି ସୁଖ
ଜନ୍ମ ଥାଉ କି ମୃତ୍ୟୁ
ସକଳ ଭୋଗରେ
ବି
ପ୍ରେମର ଅନାହତ
ଆନନ୍ଦକୁ
ସମାହିତ କରିନେବାରେ
ପ୍ରଶାନ୍ତି ଥିବ କି
ତାଙ୍କ ଆତ୍ମାରେ

କେମିତି ସେ
ଲୋକ ହୋଇଥିବେ

ଯାହାଙ୍କୁ ଦେଖିଲାକ୍ଷଣି
ଈଶ୍ୱର କହିଉଠିବେ

ଏତେ ଦିନ
ତମକୁ ହିଁ ତ

ମୁଁ ଅପେକ୍ଷା କରିଥିଲି

ଆଉ ବଜେଇ ପାରୁନଥିବା

ବଂଶୀଟିକୁ

ତୋଳିଦେବି ବୋଲି

ତମରି ହାତରେ

*

## ଚୁପ୍‌ଚାପ୍ ନାରୀଟିଏ

ଚୁପ୍‌ଚାପ୍ ନାରୀଟିଏ
ଦୁଃଖର ଆଲୋକରେ ଉଜ୍ଜ୍ୱଳ
ଆଖିର ଗହୀରରେ ଅଥଳ
ପ୍ରେମର ଆକୁଳତାରେ ଢଳଢଳ
ସ୍ୱପ୍ନର ଖୁବ୍ ଛୋଟଛୋଟ
ଟୁକୁରାକୁ ଯୋଡ଼ିଯୋଡ଼ି
ନିଜକୁ ବହୁକଷ୍ଟରେ
ତିଆରି କରୁଥିବା ନାରୀଟିଏ
ଭାରି ଚୁପ୍‌ଚାପ୍ ସବୁବେଳେ

କିଛି ପ୍ରେମିକ ଆସିଲେ
ତା' ଜୀବନରେ
ଏବଂ ଆସିଲେ କିଛି କବି,
କେହି ପ୍ରେମିକା କରି
ଶୋଷିନେବାକୁ ଚାହିଁଲେ ଦେହରେ ତ
କେହି କବିତା କରି
ସଜେଇ ଦବାକୁ ଚାହିଁଲେ
ବହିଥାକରେ......

ଆହା......
କେତେ ଅଭାବୀ
ମଣିଷମାନେ ସତରେ !
ନାରୀଟି
ନିଜ ଦେହରୁ କାଢ଼ିଦେଲା
କିଛି ପ୍ରେମିକାପଣ
ଓ ଆତ୍ମାରୁ ଚିପୁଡ଼ିଦେଲା
କିଛି କବିତା !

ତାକୁ ନିଃଶେଷ କରିଦବାର
ଆସ୍ଫାଳନରେ
ସେମାନେ ଫାଟିପଡ଼ିଲାବେଳେ
ତାଙ୍କ ରିକ୍ତତାର ଅଂଧାର ରଙ୍ଗଶାଳାରେ
ମ୍ରିୟମାଣ, ଭରପୂର ନାରୀଟିଏ
ଗୋଟିଏ କୋଣକୁ
ଆଉଜିଯାଉଥାଏ ଚୁପ୍‌ଚାପ୍ ।

ଦୁଃଖର ଆଲୋକରେ ଉଜ୍ଜ୍ୱଳ
ଆଖିର ଗହୀରରେ ଅଥଳ
ପ୍ରେମର ଆକୁଳତାରେ ଢଳଢଳ
ଚୁପ୍‌ଚାପ୍ ନାରୀଟିଏ ।

## ପ୍ରଥମ ବିଶ୍ୱାସ

ପଦେ କଥାରେ
ଭାଙ୍ଗିଗଲା

ଗଙ୍ଗଶିଉଳି ଫୁଲରେ
ତୋଳିଥିବା
ଉଆସ,

ପୂନେଇଁ ଜହ୍ନର
ଜୋଛନାରେ
ମୋ' ଘରୁ
ତୋ' ଘରକୁ
ତିଆରିଥିବା
ରାସ୍ତା....

ସାରା ଜୀବନର
ରକ୍ତ ଦେଇ
ଆଙ୍କିଥିବା
ଇନ୍ଦ୍ରଧନୁର ଭବିଷ୍ୟତ !

ଚରମ ନିରାଶାର
ଅତଳତଳରେ
ବୁଡ଼ିଗଲାବେଳେ
କେହି ନଥିଲେ
ପାଖରେ ।

ଧୀରେ.....,
ଅର୍ଥପୂର୍ଣ୍ଣ ଛାଇଟିଏ ହୋଇ
କାଳିଦାସଙ୍କ ପରି କିଏ ଜଣେ ଆସିଲେ
ଲୁହରେ ମିଳେଇଯାଇଥିବା
ମୋ' ଦୃଷ୍ଟିପଥରେ ।

ବସିଥିବା ଡାଳକୁ
ମୂଳରୁ ହାଣିଦେବା,
ପାଖେଇ ଆସୁଥିବା
ଦୁର୍ଭାଗ୍ୟକୁ ବିଶ୍ୱାସ କରିବା,
ଓ ନିଜକୁ ନିଜେ
ଭଣ୍ଡିବା ଛଡ଼ା
କବି
ଆଉ କିଛି
କରିପାରେନା ବୋଲି
ସେ ମୋ'
ମଥା ଆଉଁସି କହିଲେ ।

ପ୍ରେମର
କୋମଳତମ
କବିତାସବୁ
କେତେ କଠିନ ଅପ୍ରେମ
କେତେ ନିର୍ମମ ଅବିଶ୍ୱାସ

ଓ କେଡ଼େ ତୁଚ୍ଛତମ
ତିରସ୍କାରରୁ
ଉତୁରି ଆସିଥାଏ
ବୁଝେଇଦେଲେ ।

କ୍ଷଣମୁଗ୍ଧତାର
ଜାଲରେ ବିଧୃତ
ହିତାହିତ ବିସ୍ମୃତ
ବିଚରା କବିକୁ
ମା' ସରସ୍ୱତୀ ବି
କ୍ଷମା କରନ୍ତି ନାଇଁ
କହୁକହୁ
ପିଲାଙ୍କ ପରି
କାନ୍ଦିପକେଇଲେ ।

ଛାତିରୁ
ବିତାଡ଼ିତ ନିଃଶ୍ୱାସ
ପବନକୁ ଜାକିଧରେ ଯେମିତି,
ଆମେ ମନଭରି କାନ୍ଦିଲୁ
ପରସ୍ପରକୁ ଧରି ।

ଭଲପାଇବାରେ
ବଞ୍ଚୁଥିବା ପ୍ରାଣକୁ
କେହି ଭଲପାଆନ୍ତି ନାଇଁ, କେବେ,

ବିଶ୍ୱାସ ହେଲା
ସେକଥା
ପ୍ରଥମ କରି ।

*

## ଅମୃତ-ମୃତ

କଳଙ୍କ ତ ଏକାପରି
ଆମ ଦୁହିଁଙ୍କର ।

ଖାଲି ଯା
ଅବାଞ୍ଛିତ ପତନ ମଣି
ତୁ ତାକୁ ଲୁଚେଇବାକୁ
ଆତୁର ହେଲାବେଳେ,
ନକ୍ଷତ୍ରଖଚିତ ମଥାମଣି ହୋଇ
ସିଏ ମୋ' ପରିଚୟକୁ
କରିଚି ସୁନ୍ଦର ।

ସେଇଥିପାଇଁ ତ
ମୁଁ ତୋଠୁଁ
ବେଶୀ ଚିହ୍ନାଜଣା
ଜଗତ ଯାକରେ ....

ମତେ ଦେଖିବା ଆଗରୁ
ଲୋକେ ଦେଖନ୍ତି
ମୋ' କଳଙ୍କ-ପ୍ରତିବିମ୍ବିତ
ସ୍ୱଚ୍ଛ ପ୍ରୀତି-ଦର୍ପଣକୁ ।

ଆଖି ଝଲସିଯାଏ ଲୋଭରେ ତ
ଛାତି ଜଳିପୋଡ଼ିଯାଏ
ଈର୍ଷାରେ ...

ଛୁଇଁ ବି
ଛୁଇଁପାରନ୍ତି ନାହିଁ
ଅନିର୍ବଚନୀୟ
ସେଇ ସୁନ୍ଦରପଣକୁ !

ଗ୍ଲାନି, ଅବସୋସର
ବିଷଜ୍ୱାଳାରେ ଛଟପଟ ହୋଇ !
ତୁ ଯେତେଯେତେ
ଧିକ୍କାରୁଥାଉ
ଲିଭେଇ ଦଉଥାଉ,
ଆମେ ଦୁହେଁ ମିଳିମିଶି
ଆଙ୍କିଥିବା ଜୀବନର
ଚିନ୍ମୟ-କ୍ଷଣକୁ ।

ସମର୍ପଣର ଆଭାରେ
ଉଦ୍ଭାସିତା
ମୁଁ ସେତେସେତେ
କୃତାର୍ଥ କରିଦଉଥାଏ
ତୋ'ରି ଅକ୍ଷୟ
ସନ୍ତକ କରି
ମତେ ସାଇତିରଖିଥିବା
ଅମୃତମୟ
ମହାମରଣକୁ ....

*

## ଅଭିସାର

ତାଙ୍କୁ ଟିକେ
ପାଇବି ବୋଲି ତ
ଆଜି ଏ
ରାତି ଏମିତି ବାସୁଚି
ମହମହ !

ବୁଡ଼ିଯାଉଥିବା ଜହ୍ନଓଠରେ
ହସିଦଉଚି ଆକାଙ୍କ୍ଷା
ଆବେଗର ଅତର ମାଖି
ସର୍ବାଙ୍ଗରେ ପିନ୍ଧିହୋଇଯାଉଚି
ପବନ ।

କେଉଁ ଅପାସୋରା
ଅନାହତ-ସଙ୍ଗୀତର ଲୟରେ
ଗୁଣୁଗୁଣଉଚି
ଶ୍ରାବଣ ।

ଖାଲି
ଫାଜିଲ୍ ତରାଟିଏ

ଆଖିମାରି
ଥରକୁ ଥର ପଚାରୁଚି

କ'ଣ ହବ
ତାଙ୍କୁ ପାଇଲେ ?

କ'ଣ ହବ ମ'
କହ.... କହ .... !

ଯାଃ
ମୁଁ କେମିତି କହନ୍ତି ଯେ'
ମଧୁର ଲାଜଟିଏ
କୋଳେଇ ନବ ମତେ....

କପାଳ, ଗାଲ, ଓଠ
ବେକମୂଳ
ସାଜିହେବେ
ଲକ୍ଷେଭାର ଚୁମାରେ ।

ନାହିଁନାହିଁ କରୁକରୁ
ବଉଦରେ ପୂର୍ଣ୍ଣଚନ୍ଦ୍ର ଲୁଚିଗଲା ପରି
ମୁଠାଏ ଆଲୋକିତ
ନିଃଶ୍ୱାସର ଉହାଡ଼ରେ
ଲୁଚିଯିବ ସ୍ତନ ।

ସର୍ବସ୍ୱ ସମର୍ପଣର
ସାତ୍ତ୍ୱିକ ବିକାରରେ
ଶିହରିବ
ବିସ୍ମୃତ ଯୌବନ ।

କେମିତି ଭଲା କହିହେବ
ମୋ' ଅସ୍ତିତ୍ୱ
ନଈ ହେଇ
ବହିଗଲା ବେଳକୁ

ମତେ
ସମାହିତ କରିଦେଇଥିବ
ପରମ ପାରାବାରର
କୃତାର୍ଥ ଆଲିଙ୍ଗନ ।

ତାରାର
ଆର ଆଖିକୁ
ବୁଜିଦେଇ ମୁଁ କହେ

ଆଜି ମୋ'
ଇନ୍ଦ୍ରିୟ ଅତୀନ୍ଦ୍ରିୟର
ଅଣୁରେଅଣୁରେ
ଏଇ ମୋକ୍ଷାଭିସାରକୁ
ଅନୁଭବିନିଏ ଥରେ !

ପଚାରିବୁ ତ
ଆଉଦିନେ
ପଚାରିବୁ ସବୁକଥା,

ଆଜି ଟିକେ
ତୁନିତାନି
ରହ, ରହ !

*

## ଅସମ୍ଭବା

ସହସ୍ରଶଯ୍ୟାରେ
କେଳି କରି
ତଥାପି ଅକ୍ଷତଯୋନି
ମୁଁ
ଅସମ୍ଭବା ନାରୀ ।

ମୁଁ ହିଁ
ଉନସହସ୍ର, ପ୍ରଜ୍ୱଳିତ
ନୀଳ ନିଶୀଥର
ପିଙ୍ଗଳା,

ମୁଁ ହିଁ
ଏକମାତ୍ର
ଦିବ୍ୟ ସକାଳର
ସୂର୍ଯ୍ୟସ୍ନାତା
ଶୁଚିସ୍ମିତା
ପରମ-ଈଶ୍ୱରୀ ।

ଯେତେକ
ଶଙ୍କା ଓ ସଂଶୟ

ଲାଭ-କ୍ଷତି
ଧ୍ୱଂସ-ସ୍ଥିତିରେ ସିନା

ମାଟିକୁ ମାଟି
ଶୂନ୍ୟକୁ ଶୂନ୍ୟ
ଅଖଣ୍ଡ ସ୍ୱୀକାର କରୁଥିବା
ଅକୁଣ୍ଠିତ ଅନ୍ତରାତ୍ମା ପାଇଁ
ଭ୍ରାନ୍ତି କାହିଁ,
ଭୟ କାହିଁ ?
ଅସତ୍ୟ ବା କାହିଁ ?

ସେଠି
ଊନସହସ୍ର ରାତିରେ
ଗୋଟିଏ ଦିନ,
ଗୋଟିଏ ଦିନରେ
ଊନସହସ୍ର ରାତି ।

ତେଣୁ ତ
ମୋ'ର ଦିଗନ୍ତ ପରି
ଚକ୍ଷୁଦ୍ୱୟ,
ମଳୟ ପରି ବାହୁ
ପ୍ରଳୟ ପରି ଘୃଣା
ଓ ଶିଶିର ପରି ପ୍ରୀତି ।

ଅସଂଖ୍ୟ
କାନ୍ଥ ଭିତର ଦେଇ
ମୋ' ଚେତନାର

ଅବାଧ ଚଳାଚଳ ଦେଖି
ସମ୍ଭ୍ରମରେ
ହାତଯୋଡ଼ି ଦିଅନ୍ତି
ଅହଲ୍ୟା, ଦ୍ରୌପଦୀ, କୁନ୍ତି
ତାରା, ମନ୍ଦୋଦରୀ ।

ହୃଦୟର
ଆଶ୍ରା ଟିକିଏ ପାଇଁ
ମୁଁ ସହସ୍ର ଦ୍ୱାରରେ
ଆଘାତ କଲାବେଳେ
ଇପ୍ସିତ ଦ୍ୱାରଟି ରୁଦ୍ଧ ଥାଏ ।

ଊନସହସ୍ର ଦ୍ୱାରରେ
ଉଭା ହୋଇଥାଆନ୍ତି
ରକ୍ତପିପାସୁ ଘାତକ
ହାତରେ
ଉଦ୍ୟତ ତରବାରୀ ।

ଅଇରି ପରିବେଷ୍ଟିତ
ସେଇ
ଏକପାଦ ଭୂମି ଉପରେ
ମୁଁ ଅବଲୀଳାରେ
ଗଢୁଥାଏ ଚଉଦବ୍ରହ୍ମାଣ୍ଡ ।

ନ-ଅଇରି
ପ୍ରେମମୟୀ
ନାରୀ ।

⁂

## ଆତ୍ମଜନନୀ

ଶତପୁତ୍ରର ଜନନୀ ହେବା
ଏମିତି କିଛି
ବଡ଼ କଥା ନୁହେଁ

ବଡ଼ କଥା
ଥରୁଟିଏ
ନିଜକୁ ନିଜେ
ନିଖୁଣ କରି ଜନ୍ମଦେବା

କଦବା କେହି ମାତା
ଯୁଗଯୁଗର ଅନ୍ଧାରରେ
ବାରମ୍ବାର ଗର୍ଭଧାରଣ
ଓ ବାରମ୍ବାର ଗର୍ଭପାତ ପରେ
ନିଜକୁ ଜନ୍ମଦେବା ଇଚ୍ଛାରେ
ହୋଇଥାଏ ଆସନ୍ନପ୍ରସବା

ସେତେବେଳକୁ
କେତେ ଘରର ଦେହଳୀକୁ
ଡେଇଁଥାଏ

କେତେ ନିଷିଦ୍ଧ ସମ୍ପର୍କର
ଫଳ ଚାଖିଥାଏ ।
କେତେ ବାଟବଣା
ଅଭିସାରର
ଅବାଂଛିତ ରକ୍ତକ୍ଷରଣକୁ
ଲୁହରେ ଧୋଇଧାଇ
ଅବୈଧ ଆତ୍ମବାଳିକାର
ନିରୀହ ଭ୍ରୂଣକୁ

ଆତ୍ମବିଶ୍ୱାସର
ଜରାୟୁରେ
ଥାପିଥାଏ ।

ତାକୁ ନିଶ୍ଚୟ ଜଣାଥାଏ
ଯେ ଜନ୍ମନେବାକୁ
ଯାଉଥିବା ଏଇ ନାରୀ,

କେଉଁ ରାଜ୍ୟ କି
ଅଚଳାଚଳ ବିଭବର ନୁହେଁ
ଶାସ୍ତ୍ର ଇତିହାସରେ ଅଲିଖିତ
ଅଥଚ ତାଠୁଁ
କୋଟିଗୁଣ ଅଧିକ
ନୀରବତାରେ ସଞ୍ଚିତ
ଲାଞ୍ଛନା,ବଞ୍ଚନା ଓ
ପ୍ରତାରଣାର
ଏକମାତ୍ର ଉତ୍ତରାଧିକାରୀ ।

ତା'ର କୁଆଁତାକ
ଶୁଭିଲେ ଇ
ରେରେକାର ରବରେ
ଦୁଲୁକିବ ମେଦିନୀ
ସହସା ଉନ୍ମୁକ୍ତ ହୋଇଯିବ
ଛଳନାର ମଖମଲି
କୋଷରେ ଆବଦ୍ଧ
ଅମାନବିକତା-ରଞ୍ଜିତ
ଅସଂଖ୍ୟ ଦୋ-ଧାରୀ ତରବାରୀ

ତେଣୁ ତ
ବଡ଼ ସନ୍ତର୍ପଣରେ
ସେ ଲାଳନ କରୁଥାଏ
ନିଜ ଭିତରେ ନିଜକୁ

ଦଶମାସ ଦଶଦିନ
କିବା କଥା !

ଅସହ୍ୟ ଗର୍ଭକଷ୍ଟରେ
ବିତୁଥାଏ
କେତେ ଖରା
କେତେ ବର୍ଷା
କେତେ ପୁଣି ଶୀତ !

ଆମ୍ବନାରୀକୁ ସୁସ୍ଥ-ସମର୍ଥ
କରି, ଜନ୍ମଦେବା ପାଇଁ
ସେ ବିଦ୍ରୋହ ସାଥିରେ

ମିଶଉଥାଏ ପ୍ରେମ
ତିରସ୍କାର ସାଥିରେ କ୍ଷମା

ଯେତେ ଯାହା
ବିଧି, ଶାସ୍ତ୍ର,ଆଇନସମ୍ମତ
ସେ ସବୁକୁ ଅସ୍ୱୀକାର
କରିବାର ହୁଙ୍କାର ସାଥିରେ
ମିଶଉଥାଏ
ମଣିଷକୁ
ଛାତିରେ ଜାକିଧରିବାର
ନାନାବାୟା ଗୀତ

*

ଆତ୍ମନାରୀକୁ ସୁସ୍ଥ ସମର୍ଥକରି/
ଜନ୍ମଦେବାପାଇଁ/ ସେ ବିଦ୍ରୋହ
ସାଥୀରେ/ ମିଶାଉଥାଏ ପ୍ରେମ/
ତିରସ୍କାର ସାଥୀରେ କ୍ଷମା/
ଯେତେ ଯାହା/ ବିଧି, ଶାସ୍ତ୍ର,
ଆଇନ-ସମ୍ମତ/ ସେ ସବୁକୁ
ଅସ୍ୱୀକାର/ କରିବାର ହୁଙ୍କାର
ସାଥୀରେ/ ମିଶାଉଥାଏ/ ମଣିଷକୁ/
ଛାତିରେ ଜାକିଧରିବାର/
ନାନାବାୟା ଗୀତ।






ଓଡ଼ିଶା ବୁକ୍ ଷ୍ଟୋର